# ORIA COMPOSITION.

## Part I.

BY

RADHA NATH RAI

Published by

RAJA BAIKUNTHANATH DE BAHADUR

FIFTH EDITION

# ଉତ୍କଳରଚନା ।

## ପ୍ରଥମଭାଗ

ଶ୍ରୀ ରାଧାନାଥରାୟଙ୍କ କର୍ତ୍ତୃକ ବିରଚିତ

ରାଜା ଶ୍ରୀବୈକୁଣ୍ଠନାଥ ଦେ ବାହାଦୁରଙ୍କ କର୍ତ୍ତୃକ

ପ୍ରକାଶିତ ।

ପଞ୍ଚମ ସଂସ୍କରଣ ।

ବାଲେଶ୍ୱର ।

୧୮୯୦ ।

Printed by K. P. Das

at the De's Utkal Press.

22, Raja Shymanand De Bahadoor's

Street BALASORE

ମୂଲ୍ୟ ପାଞ୍ଚ ଅଣା ମାତ୍ର ।

# ସୂଚୀ ।

# ଉତ୍କଳରଚନା ।

## ପ୍ରଥମ ଅଧ୍ୟାୟ ।

### ବିରଚନ ।

ବ୍ୟାକରଣର ଯେଉଁ ପ୍ରକରଣମାନ ବାକ୍ୟ ରଚନା ବିଷୟରେ ଉପଯୋଗୀ ଏହି ଅଧ୍ୟାୟରେ ସେମାନଙ୍କୁ ଅନ୍ତର୍ଗତ କରାଗଲା ।

ଶବ୍ଦପ୍ରକରଣ ବ୍ୟାକରଣର ଆଦ୍ୟରେ ସନ୍ନିବିଷ୍ଟ ହୋଇଅଛି । ଏଗ୍ରନ୍ଥ ବ୍ୟାକରଣମୂଳକ ହେଲେହେଁ ଏଥିରୁ ତାହା ପରିତ୍ୟକ୍ତ ହେଲା । ବସ୍ତୁତଃ ଏଗ୍ରନ୍ଥରେ ଶବ୍ଦପ୍ରକରଣ ସନ୍ନିବେଶ କରିବାର ଅନାବଶ୍ୟକ । ମନରଭାବ ପ୍ରକାଶ କରିବା ବିଷୟରେ ଶବ୍ଦ କିଛି ମାତ୍ର ସାହାଯ୍ୟ କରଇ ନାହିଁ; ଶବ୍ଦପ୍ରକରଣର ବର୍ଣ୍ଣ ସଙ୍ଗରେ ଯେମନ୍ତ ସମ୍ପର୍କ ଅଛି ମନ ସଙ୍ଗରେ ତେମନ୍ତ ସମ୍ପର୍କ ନାହିଁ ।

ଏଥିରେ ଯେଉଁ ସାଧନାଗୁଡ଼ି ପ୍ରଦତ୍ତ ହେଲା ତାହା ଛାତ୍ରମାନଙ୍କର ଅଭ୍ୟସ୍ତ ହେଲେ ବାକ୍ୟ ରଚନାରେ ସେମାନଙ୍କର ଅଭ୍ୟାସ ଜନ୍ମିବ । ବାକ୍ୟ ରଚିବାର କ୍ଷମତା ଜନ୍ମିଲା ଉତ୍ତାରୁ ୨ୟ ଅଧ୍ୟାୟରେ ତାହାକୁ ରୂପାନ୍ତରିତ ଅଥବା ସଂକ୍ଷିପ୍ତ କରିବାକୁ ଶିଖିବେ ।

ଏଥିରେ ଯେଉଁ ପ୍ରଶ୍ନମାନ ପ୍ରଦତ୍ତ ହେଲା ସେମାନଙ୍କର ଉତ୍ତର ଦାନ ବିଷୟରେ ଶିକ୍ଷକ ଯେମନ୍ତ ସ୍ଥଳରେ କି ସାହାଯ୍ୟ ନକରନ୍ତି ନଚଳିବ ଏପରି ସ୍ଥଳରେ କେବଳ ସାହାଯ୍ୟ ମାତ୍ର କରିବେ । ବାଧ୍ୟପକ୍ଷରେ ସାହାଯ୍ୟ ଯେତେ ଅଳ୍ପ ହୁଏ, ସେତେ ଭଲ । ଛାତ୍ରମାନେ ଶିକ୍ଷକଙ୍କର ସାହାଯ୍ୟର ପ୍ରତୀକ୍ଷା ନକରି ଆତ୍ମ ନିର୍ଭରଶୀଳ ହେବାକୁ ଶିଖିଲେ ସେମାନଙ୍କର ପ୍ରକୃତ ଶିକ୍ଷାଲାଭ ହେବ

ଗ୍ରନ୍ଥର କଳେବର ବୃଦ୍ଧି ଭୟରେ ଅଳ୍ପସଂଖ୍ୟକ ପ୍ରଶ୍ନ ଦିଆଯାଇ ଅଛି । ଯେଉଁଠାରେ ଅପ୍ରଚୁରତା ଲକ୍ଷିତ ହେବ ସେପରି ସ୍ଥଳମାନଙ୍କରେ ପ୍ରଦତ୍ତ ପ୍ରଶ୍ନର ଅନୁକରଣରେ ଶିକ୍ଷକ ମହାଶୟ ଅନ୍ୟ ପ୍ରଶ୍ନ ସ୍ୱୟଂ ପ୍ରସ୍ତୁତ କରି ଦେଇ ପାରିବେ ।

## ପ୍ରଥମ ଅଧ୍ୟାୟ ।

## ପ୍ରଥମ ସାଧନ ।

୧ । ଉଦାହରଣ ।

ପ୍ରଶ୍ନ । ବୃକ୍ଷର ଭିନ୍ନ ୨ ଅଂଶର ନାମ ଲେଖ ।

ଉତ୍ତର । ଶାଖା, ପତ୍ର, ମୂଳ, ଫଳ, ବଲ୍କଳ, ଅଙ୍କୁର, ଫୁଲ, କଳିକା, ରସ, କାଣ୍ଡ ।

( ୧ ) ଉଦ୍ଧିଖିତ ଉଦାହରଣ ଅନୁକରଣରେ ନିମ୍ନଲିଖିତ ପଦାର୍ଥମାନଙ୍କର ଭିନ୍ନ ୨ ଅଂଶର ନାମ ଲେଖ ।

ଯଥା— ପୁଷ୍କରଣୀ, ପକ୍ଷୀ, ନଦୀ, ଶରୀର, ଘର, ପୁସ୍ତକ, ଇତ୍ୟାଦି ।

( ୨ ) ଯେତେପ୍ରକାର ବୃକ୍ଷର, ଲତାର ନାମ ଜାଣ ଲେଖ ।

( ୩ ) ବିଦ୍ୟାଳୟ ଗୃହରେ ଥିବା ପଦାର୍ଥମାନଙ୍କର ନାମ ଲେଖ

( ୪ ) ଯେତେପ୍ରକାର ପଶୁ ଓ ପକ୍ଷୀର ନାମ ଜାଣ ଲେଖ ।

( ୫ ) ଯେତେପ୍ରକାର କୀଟ ଓ ପତଙ୍ଗର ନାମ ଜାଣ ଲେଖ ।

( ୬ ) ଯେତେପ୍ରକାର ପରିଚ୍ଛଦ ଲୋକେ ବ୍ୟବହାର କରନ୍ତି ସେମାନଙ୍କର ନାମ ଲେଖ ।

( ୭ ) ହାଟରେ ଯେଉଁ ପଦାର୍ଥମାନ ବିକ୍ରୟ ହେବାର ଦେଖି ଅଛ ସେମାନଙ୍କର ନାମ ଲେଖ ।

( ୮ ) ଆକାଶରେ ସହରେ ଯାହା ୨ ଦେଖିଥାଅ, ସେମାନଙ୍କର ନାମ ଲେଖ ।

( ୯ ) ଯେତେପ୍ରକାର ଫଳର ନାମ ଜାଣ ଲେଖ ।

( ୧୦ ) ଯେତେପ୍ରକାର ଶସ୍ୟର ନାମ ଜାଣ ଲେଖ ।

## ପ୍ରଥମ ଅଧ୍ୟାୟ ।

### ବିଶେଷ୍ୟ ସାଧନା ।

୧ । ନିମ୍ନଲିଖିତ ବିଶେଷ୍ୟପଦ ଗୁଡ଼ିକୁ ବିଶେଷଣ ଯୁକ୍ତ କରି ଲେଖ ଆକାଶ; ଜଳ, ପର୍ବତ, ପଥ, ଲତା, ଫଳ, ବୃକ୍ଷ, ମେଘ, କନ୍ୟା, ସ୍ତ୍ରୀ, ବାଳକ, ଘର, ଘୋଟକ, ବସ୍ତ୍ର, ଭୂମି, ଭୃତ୍ୟ, ସିଂହ, ବାଳିକା, ସରୋବର, ହସ୍ତୀ, ପୁଷ୍ପ, ସୂର୍ଯ୍ୟ, କ୍ଷେତ୍ର, ରାଜା, ପ୍ରଜା, ଶର, କାଷ୍ଠ, ମଣି, ସର୍ପ, ବ୍ୟାଘ୍ର, ଶବ୍ଦ, ଭୂମି, ପ୍ରାଚୀର, ସମୁଦ୍ର, ଦ୍ୱୀପ, ଦର୍ପଣ, ଚନ୍ଦ୍ର, ନକ୍ଷତ୍ର, ଶଙ୍ଖ, ଦେବ, ବାଣ୍ଡ, ବାହୁ ।

୨ । ନିମ୍ନଲିଖିତ ବିଶେଷଣମାନଙ୍କରେ ଉପଯୁକ୍ତ ବିଶେଷ୍ୟପଦ ଦେଇ ଲେଖ ।

ଚିକ୍କଣ, ମଧୁର, ହରିତ, ପୀତ, ଉତ୍ତମ, କ୍ଷୁଦ୍ର, ଶ୍ୱେତ, ରକ୍ତ, ଗମ୍ଭୀର, ଚଞ୍ଚଳ, କୋମଳ, ସୁନ୍ଦର, ତୀକ୍ଷ୍ଣ, କଟୁ, ଶୁଷ୍କ, ଭୀରୁ, ନୀଚ, ଖର୍ବ, ଉଚ୍ଚ, ଅଧମ, ବିଷମ, ପାର୍ବତୀୟ, ଅରଣ୍ୟ, ନାବ୍ୟ, ଗ୍ରାମ୍ୟ, ପ୍ରଶସ୍ତ, ତରଳ, ଘନ, ବିଶାଳ, ଦରିଦ୍ର, ଉଜ୍ଜ୍ୱଳ, ଉଷ୍ଣ ମିଷ୍ଟ ।

ଉଦାର, ପବିତ୍ର, ପ୍ରାକୃତିକ, ଅଭୁର, ଅର୍ବ, ସ୍ୱର୍ଗୀୟ, ଅସାଧାରଣ, ବଦାନ୍ୟ, ପାର୍ଥିବ, ଲୌକିକ, ଐହିକ, ସତ୍, କୃତ୍ରିମ, ଦୈହିକ, ମାତ୍ୱିକ, ବ୍ୟସ୍ତ, ବକ୍ର, ଅଗାଧ ।

---

## ପ୍ରଥମ ଅଧ୍ୟାୟ ।

### ତୃତୀୟ ସାଧନା ।

୧ । ନିମ୍ନଲିଖିତ ଖଣ୍ଡବାକ୍ୟମାନଙ୍କରେ କର୍ତ୍ତୃପଦ ଦେଇ ବାକ୍ୟ ସମ୍ପୂର୍ଣ୍ଣ କର ।

—ଦୌଡ଼ୁଅଛି, —ଭୋଜନ କରୁଅଛି, —ତପସ୍ୟା କରୁଅଛନ୍ତି, —ଦଣ୍ଡକାରଣ୍ୟକୁ ଗଲେ, —ସୀତାଙ୍କୁ ହରଣ କଲେ, —ବରଦେଲେ, —ଅଭିଶାପ ଦେଲେ, —ସରଯୂନଦୀ ପାର

ଦେଲେ,—ଗଦା ପ୍ରହାର କଲେ,— ଶର ନିକ୍ଷେପ କଲେ ।

୬ । ନିମ୍ନଲିଖିତ ବିଶେଷ୍ୟ ଗୁଡ଼ିକୁ କର୍ତ୍ତୃପଦରେ ବ୍ୟବହାର କରି ବାକ୍ୟ ରଚନା କର ।

ପିତା, ଶିକ୍ଷକ, ପ୍ରଭୁ, ବ୍ୟାଘ୍ର, ହରିଣ, ଲୌହକାର, କୁମ୍ଭକାର, ଧୀବର , ତନ୍ତୁବାୟ , ବର୍ଦ୍ଧକୀ , ଖନକ, ରଜକ, ଗାୟକ , ନର୍ତ୍ତକୀ, ପୁରୋହିତ, ମୂକ, ବାହକ ।

୩ । ନିମ୍ନଲିଖିତ ଖଣ୍ଡବାକ୍ୟମାନଙ୍କରେ କର୍ମପଦ ଦେଇ ବାକ୍ୟ ସମ୍ପୂର୍ଣ୍ଣ କର ।

ରାଜା— ଦେଲେ, ଶିଷ୍ୟମାନେ—କଲେ, ଦସ୍ୟୁମାନେ—ବେଷ୍ଟନ କଲେ, ପ୍ରଭୁ—ପ୍ରହାର କଲେ, ଦୁଷ୍ମନ୍ତ—ବିବାହ କଲେ, ସମ୍ରାଟ—ସ୍ଥାପନ କଲେ, କଲମ୍ବସ—ଆବିଷ୍କାର କଲେ, କାଳିଦାସ—ରଚନା କରିଥିଲେ, ଇଂରେଜମାନେ ଭାରତବର୍ଷର— କରିବେ , ଦାସୀ—ଢାଳିଦେଲା , ସୁଦକ୍ଷିଣା—ପ୍ରସବ କଲେ , ବର୍ତ୍ତମାନ ଭାରତବର୍ଷର ଅନେକଲୋକେ—ଯାଉ ଅଛନ୍ତି, ବଣିକମାନେ—ନିର୍ମାଣ କରୁ ଅଛନ୍ତି ।

୪ । ନିମ୍ନଲିଖିତ ଶବ୍ଦଗୁଡ଼ିକୁ କର୍ମପଦରେ ବ୍ୟବହାର କରି ବାକ୍ୟ ରଚନା କର ।

ମନୁଷ୍ୟ ଧନୁ, ଦୁଧ, ଯୌବନ, କାଳ, ପୃଥିବୀ, ଦେବତା, କ୍ରୀଡ଼ା, ମାତା, ଲେଖନୀ, ନଗର, ତଣ୍ଡୁଳ, ଦଣ୍ଡ, ପଣ୍ଡିତ, ଦର୍ଶକ, ଅନ୍ନ ।

୫ । ନିମ୍ନଲିଖିତ ବାକ୍ୟମାନଙ୍କରେ କରଣ ପଦ ଦେଇ ବାକ୍ୟ ସମ୍ପୂର୍ଣ୍ଣ କର ।

—ଦେଶ ପ୍ଳାବିତ ହେଲା, ରାମ—ରାବଣର ବକ୍ଷସ୍ଥଳ ଭେଦ କଲେ, ଭୀମ—ଦୁର୍ଯୋଧନଙ୍କର ଉରୁ ଭଗ୍ନ କଲେ, ଯୁଧିଷ୍ଠିର—ଦେବଙ୍କ ଉପାସନା କଲେ,—ପୁସ୍ତକ ଲିଖିତ ହେଲା,—କୁମ୍ଭ ପୂର୍ଣ୍ଣ କର ,—ଚରିତ୍ର ସଂଶୋଧନ ହୁଏ,—ଦେହ କମ୍ପିତ

ହେଲା,—ବସ୍ତ୍ର ଉଡ଼ିଗଲା ।

୬ । ନିମ୍ନଲିଖିତ ଶବ୍ଦଗୁଡ଼ିକୁ କରଣ ପଦରେ ବ୍ୟବହାର କରି ବାକ୍ୟ ରଚନା କର ।

ଖଡ୍ଗ, ଲାଙ୍ଗଳ, ଶସ୍ୟ, ପ୍ରବାହ, ଯଷ୍ଟି, ସୈନ୍ୟ, ଶାସ୍ତ୍ର, ଚେଷ୍ଟା ଜାଗରଣ, ଶଙ୍କା, କ୍ରୋଧ, ତୃଷା ।

୭ । ନିମ୍ନଲିଖିତ ଖଣ୍ଡବାକ୍ୟମାନଙ୍କରେ ସମ୍ପ୍ରଦାନ ପଦ ଦେଇ ବାକ୍ୟ ପୂର୍ଣ୍ଣ କର ।

ସେ—ଅର୍ଘ୍ୟ ଦେଲେ,—ଜଳ ପ୍ରଦାନ କର,—ଅନ୍ନଦିଅ, —ବସ୍ତ୍ରଦାନକର,—ସୁଷ୍ଟି କର ଅଧିକାର ଦେବାର ଉଚିତ, —ଜ୍ଞାନ ଦେବା—ଚକ୍ଷୁଦେବା ପରି, ପ୍ରାର୍ଥନା ପୂର୍ଣ୍ଣ କରିବାର କ୍ଷମତା ନଥିଲେ—ଆଶା ଦେବାର ଅନୁଚିତ ।

୮ । ନିମ୍ନଲିଖିତ ଶବ୍ଦଗୁଡ଼ିକୁ ସମ୍ପ୍ରଦାନ ପଦରେ ବ୍ୟବହାର କରି ବାକ୍ୟ ରଚନା କର ।

ଦରିଦ୍ର, ବିପ୍ର, କୁକ୍କୁର, ବଳଦ, ରୋଗୀ, ରାଜା, ଅନ୍ଧ, ଶତ୍ରୁ ।

୯ । ନିମ୍ନଲିଖିତ ଖଣ୍ଡ ବାକ୍ୟ ମଧ୍ୟରେ ଅପାଦାନ ପଦଦେଇ ବାକ୍ୟ ପୂର୍ଣ୍ଣକର ।

ପାଣ୍ଡବମାନେ—ପ୍ରସ୍ଥାନ କଲେ,—ବଜ୍ରପାତ ହେଲା, ଜଳ —ନିର୍ଗତ ହେଲା, ସଭ୍ୟମାନେ—ଫେରି ଆସିଲେ,—ଅନେକ ଧନ ବିତରଣ ହେଲା,—ପୁରୀ ପର୍ଯ୍ୟନ୍ତ ରାଜରାସ୍ତା ଅଛି, ଗଙ୍ଗା —ନିର୍ଗତ ହୋଇ ଅଛନ୍ତି, ଦୁର୍ଯ୍ୟୋଧନ—ବାହାରିଲେ ।

୧୦ । ନିମ୍ନଲିଖିତ ଶବ୍ଦଗୁଡ଼ିକୁ ଅପାଦାନରୂପେ ବ୍ୟବହାର କରି ବାକ୍ୟ ରଚନା କର ।

ବୃକ୍ଷ, ପର୍ବତ, ନଦୀ, ଜଳ, ଚକ୍ଷୁ, ମନ, ଶରୀର, ଦେଶ, ମୃତ୍ତିକା, କଟକ, ଇଂଲଣ୍ଡ, ଆଶା, ମୂର୍ଖ, ପଦ୍ମ, ମୃଦଙ୍ଗ, ଦନ୍ତ, ପଙ୍କ, ଧାନ୍ୟ, ଦୁଗ୍ଧ, ଗୁଡ଼ ।

୧୧ । ନିମ୍ନଲିଖିତ ଖଣ୍ଡ ବାକ୍ୟମାନଙ୍କରେ ସମ୍ବନ୍ଧ ପଦଦେଇ ବାକ୍ୟ ପୂର୍ଣ୍ଣକର ।

ଯଥା—ଗର୍ବ ଗଞ୍ଜନ କଲେ, ଚୋରମାନେ—ସର୍ବସ୍ୱ ହରଣ କଲେ, ପଦ୍ମ—ଶୋଭା ଅଟେ, ବିଦ୍ୟା—ଭୂଷଣ ସ୍ୱରୂପ, ଦୂରରୁ—ବର୍ଣ୍ଣ ନୀଳ ଦିଶେ,—ଅସାଧ୍ୟ କାର୍ଯ୍ୟ ନାହିଁ,—ଦୃଷ୍ଟିପଥ ବ୍ୟାପିଲା, ଜଗଦୀଶ୍ୱର—ହୃଦୟ ଦେଖୁ ଅଛନ୍ତି,—ଦଣ୍ଡ ଅବଶ୍ୟ ହେବ,—ପୁରସ୍କାର ଅବଶ୍ୟ ମିଳିବ ।

୧୨ । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସମ୍ବନ୍ଧପଦରେ ବ୍ୟବହାର କରି ବାକ୍ୟ ରଚନା କର ।

ଯଥା. ଚନ୍ଦ୍ର, ସମ୍ଭ, କୋକିଳ, ମାତା, ବୃକ୍ଷ, ନକ୍ଷତ୍ର, ବସନ୍ତ, ବେଗ, ଖଦ୍ୟୋତ, ସାଗର, ନଦୀ, କମଳ, ସର୍ପ ।

୧୩ । ନିମ୍ନଲିଖିତ ଖଣ୍ଡ ବାକ୍ୟମାନଙ୍କରେ ଅଧିକରଣ ପଦ ଦେଇ ବାକ୍ୟ ପୂର୍ଣ୍ଣକର ।

—ସଂସ୍ତ୍ରେ ସ୍ୱାର୍ଥ ଦେଖୁ ଅଛନ୍ତି,—କେହି ନଥିଲ,—ଅମ୍ର ପକ୍ୱ ହୁଏ,—ତରୁମାନେ ମୁକୁଳିତ ହୁଅନ୍ତି,—ମନର ବୃତ୍ତି ସତେଜ ହୁଏ,—ସିଦ୍ଧ ପୋଡ଼ କ ଅଛନ୍ତି, ତାହାଙ୍କ—ଦୟା ନାହିଁ,—ଅନେକ ସୁଖଅଛୁ,—ଅନେକ ନଦୀଅଛି,—କେବଳ କାଳୁକାରଣି ଲକ୍ଷିତ ହୁଏ,—ସ୍ଥିତିସ୍ଥାପକତା ଗୁଣ ଅଛୁ,—ଅକବର—ଅଗ୍ରେହଣ କଲେ, ବଶ୍ୱାମିତ୍ର—ଉପଦେଶନ କଲେ,—ପାଞ୍ଚ ଦଶ ଅଛୁ, ତାହାଙ୍କ—କଳଙ୍କ ନାହିଁ, ଲକ୍ଷ୍ମଣଙ୍କ—ଶର ବଦ୍ଧ ହେଲା ।

୧୪ । ନିମ୍ନଲିଖିତ ଶବ୍ଦଗୁଡ଼ିକୁ ଅଧିକରଣରୂପେ ବ୍ୟବହାର କରି ବାକ୍ୟ ରଚନା କର ।

କଲିକତା, ଭାରତବର୍ଷ, ଶ୍ରେଣୀ, ବିଦ୍ୟାଳୟ, ବସନ୍ତ, ମଧ୍ୟାହ୍ନ, ଅନ୍ନ, ହୃଦୟ, ଶରୀର, ଜଳ, ମୂଳ, ମସ୍ତକ, ଯଶଃ,

ବାଣୀ, ହରଦ୍ୱାର, ଧନ, ଶିଖ, ପୁଷ୍ପ, ମାଂସ ।

୧୫ । ନିମ୍ନଲିଖିତ ଖଣ୍ଡ ବାକ୍ୟମାନଙ୍କର ଶୂନ୍ୟ ସ୍ଥଳମାନଙ୍କରେ ଯଥାଯୋଗ୍ୟ କାରକ ପଦ ଦେଇ ବାକ୍ୟ ପୂର୍ଣ୍ଣକର ।

— ଅସ୍ତ ହେଲେ । —ଅବସାନ ହେଲା । ଅନ୍ଧକାର—ଆଚ୍ଛନ୍ନ କଲା । ପକ୍ଷିମାନେ—ଯାଇଥିଲେ । —ଦେଖି—ଫେରି ଆସିଲେ ଏବଂ—ଆହାର ଦେଲେ । ଗୋପାଳମାନେ—ଧେନୁ —ଫେରି ଆସିଲେ । —ଅତ୍ୟନ୍ତ ଶୋଭା ହେଲା । —ଫୁଟିଲେ —ଚନ୍ଦ୍ର ଉଦିତ ହେଲେ । ଧୀର—ବହିଲା ।

—ସୂର୍ଯ୍ୟତେଜ ପ୍ରଚଣ୍ଡ ହୁଏ । —ଜଳ ଶୁଷ୍କ ହୋଇଯାଏ । —ବଡ଼ ଖରା ହୁଏ । କେହି—ବାହାର ପାରେ ନାହିଁ । —ଧ୍ୟାନ ବହେ । —ବେଗରେ ପବନ ବହେ । — ବନ ବଢ଼େ —ଛୁଟେ । —ଆକାଶ— ଅଚ୍ଛନ୍ନ ହୁଏ । —ଜଳରେ ପୂର୍ଣ୍ଣ ହୁଏ । ମାର୍ଗରେ ଅତିଶୟ—ହୁଏ । —ଭେକମାନେ ନୂତନ—ପାଇ—ଡାକନ୍ତି । କଦମ୍ବ ଓ ମାଳଞ୍ଚ—,—ସ୍ଥଳଦଗ ଆମୋଦିତ ହୁଏ । ଅତା, ତାଳ, ଖଜୁରିପଣସ ପ୍ରଭୃତି—ପାଚେ ।

ଶରତ୍ କାଳରେ—ପରିଷ୍କୃତ ହୁଏ । —କର୍ଦ୍ଦମ ଶୁଖିବାକୁ ଆରମ୍ଭ ହୁଏ । —,—ଅତ୍ୟନ୍ତ ଶୋଭା ହୁଏ । —ଜ୍ୟୋତ୍ସ୍ନା ଅତି ନିର୍ମଳ ହୁଏ, କ୍ଷେତ—ପକ୍ୱପୂର୍ଣ୍ଣ ଦେଖି—ବଡ଼ ପ୍ରୀତହୁଏ । —ଦୁର୍ଭିକ୍ଷରେ ଅନେକ—ମଲେ,—ଅତ୍ୟନ୍ତ ଦୁର୍ମୂଲ୍ୟ ହେଲା ।

୧୬ । ନିମ୍ନଲିଖିତ ବିଶେଷ୍ୟ ଗୁଡ଼ିକୁ ବ୍ୟବହାର କରି ବାକ୍ୟ ରଚନା କର ।

ହଳ, ବଳ, ସ୍ୱର୍ଗ, ରଥ, ଶରୀର, ଆଚରଣ, ଯୌବନ, ଅଗ୍ନି, ବାୟୁ, ପୁଷ୍ପ, ବସ୍ତ୍ର, ବନ, କୂଳ, ଦୂତ, ଆଶ୍ରମ, କୁଟୀର, ନାମ, ପୃଷ୍ଠ କନ୍ୟା, ସ୍ତମ୍ଭ, ଭୂମି. ମେଷ, ମୃଗ, ବ୍ୟାଧ, ଅସ୍ତ୍ର, ପତ୍ନୀ, ରଜା, ବାଳକ, ଶିଳା, ମେଘ, ସୂର୍ଯ୍ୟ, ଲତା, ମନୁଷ୍ୟ, ପଶୁ, ପକ୍ଷୀ,

ଅପନ, ଲେଖନ, କେଶ, ନାଶିକା, କଣ୍ଠ, ନଧ, ଦମ୍ଭୀ, କଳସ ଅଶ୍ରୁ, ପ୍ରାଚୀର, ମନ୍ଦର, ପୁଷ୍କରଣୀ, ବେଦୀ ।

## ପ୍ରଥମ ଅଧ୍ୟାୟ ।

### ୪ ର୍ଥ ସାଧନା ।

୧ । ନିମ୍ନଲିଖିତ ଖଣ୍ଡବାକ୍ୟମାନଙ୍କର ଶୂନ୍ୟ ସ୍ଥଳରେ ଯେଉଁ କାଳର କିମ୍ବା ଯେଉଁ ଠାରେ ଦେବାର ଉଚିତ ତାହା ଦେଇ ବାକ୍ୟ ପୂର୍ଣ୍ଣ କର ।

( ୧ ) ସଖି ! ଏହୁ ଭୂଷଣ କଣ୍ଠରେ— ।
( ୨ ) କଟକର ଦୁଇପଟରେ ଦୁଇ ନଦୀ— ।
( ୩ ) ସର୍ପ ଅତ୍ୟନ୍ତ କ୍ରୂର— ।
( ୪ ) ପ୍ରଜାମାନେ ବଗଛ ଦୁର୍ଭିକ୍ଷରେ ଅନାହାରରେ ପ୍ରାଣ—
( ୫ ) ଅନପୃଥ୍ୱୀ ବନରେ ଫୁଲ— ।
( ୬ ) ମୃଦୁ ପବନରେ ବୃକ୍ଷର ପତ୍ର— ।
( ୭ ) ଦେଶ ଭ୍ରମଣ ଦ୍ୱାରା ଅନେକ ଜ୍ଞାନ— ।
( ୮ ) ଲକ୍ଷ୍ମଣ ରାମଙ୍କ କୁଟୀର ଦ୍ୱାରରେ— ।
( ୯ ) ଧନ ବଢ଼ିଲେ ମନ— ।
( ୧୦ ) ଅଟଳକୁ ପାଞ୍ଚ ବର୍ଷରେ ଏବୃକ୍ଷ— ।
( ୧୧ ) ବୃନ୍ଦାବନରେ ବଂଶୀ— ।
( ୧୨ ) ବାନରମାନଙ୍କ ଗର୍ଜ୍ଜନ ଶୁଣି ରାକ୍ଷସ ସେନା— ।
( ୧୩ ) ତାହାଙ୍କ ନେତ୍ରରୁ ଅଶ୍ରୁ— ।
( ୧୪ ) ଏ କର୍ମ ସେ—ନାହିଁ— ।
( ୧୫ ) ରଥରେ ଦେବ— ।
( ୧୬ ) ବଟଫଳ ପଦ୍ମରାଗମଣିପରି— ।
( ୧୭ ) ଗୃଷ୍ମାରେ ହଂସ— ।

( ୧୮ ) ମାଳଧରା ହସ୍ତରେ— ।

( ୧୯ ) ଶରତ୍କାଳର ରୌଦ୍ର ଦେହକୁ— ।

( ୨୦ ) ବାରୁଦରେ ଅଗ୍ନି— ।

( ୨୧ ) ପ୍ରଭାତରେ ଉଠି ମୂର୍ଖ— ।

( ୨୨ ) ରମେଶ୍ୱର ପର୍ଯ୍ୟନ୍ତ ରାଜଦାଣ୍ଡ— ।

( ୨୩ ) ତାହାଙ୍କୁ ଶୃଗାଳ—

( ୨୪ ) ସାବିତ୍ରୀ ସତ୍ୟବାନଙ୍କୁ— ।

( ୨୫ ) ପରଶୁରାମ ବ୍ରାହ୍ମଣମାନଙ୍କୁ ପୃଥିବୀ— ।

( ୨୬ ) ସେ ଅହିଫେନ— ।

( ୨୭ ) ବର୍ଷାକାଳରେ ବୃଷ୍ଟି— ।

( ୨୮ ) ବ୍ରାହ୍ମଣମାନେ ପ୍ରାପ୍ତି ଆଶାରେ—କିନ୍ତୁ ସେମାନଙ୍କର ଆଶା ବିଫଳ—

( ୨୯ ) ପୃଥିବୀମଧ୍ୟରେ ଯେତେ କବି—, ବାଲ୍ମୀକି ସମସ୍ତଙ୍କ ଅଗ୍ରଗଣ୍ୟ— ।

( ୩୦ ) ଭୂମିଷିବା ପୂର୍ବରୁ ସେ— ।

( ୩୧ ) ଜଗଦ୍ଖଣ୍ଡର ମନୁଷ୍ୟଙ୍କ ବୃଦ୍ଧି— ।

( ୩୨ ) ଈଶ୍ୱର ଆଦେଶ ପାଇଥିଲେ ସେ ।

( ୩୩ ) ରାଜପୁରୁଷମାନେ ଯେବେ ପୂର୍ବରୁ ସାବଧାନ—ତାହା ହେଲେ ନଅଙ୍କରେ ଏତେ ଲୋକ— ।

( ୩୪ ) ଏ ରୋଗକୁ ଦେଶୀୟ ବୈଦ୍ୟ ଭଲ—ନାହିଁ ।

( ୩୫ ) ଇଂରେଜମାନେ ଭାରତବର୍ଷ ଉତ୍ତମରୂପେ— ।

( ୩୬ ) ଗଡ଼ଜାତ ରାଜାମାନେ ଯେବେ ସଭ୍ୟ—,ତାହାହେଲେ ଅଳ୍ପଦିନ ମଧ୍ୟରେ ଓଡ଼ିଶାର ମୁଖ ଉଜ୍ଜ୍ୱଳ— ।

( ୩୭ ) ପୁରାଣରେ—, ଯେ ପୂର୍ବକାଳରେ ପର୍ବତମାନେ—

( ୩୮ ) ଆଜିକାଲି ବ୍ରାହ୍ମଣମାନେ ସବୁ କର୍ମ ଛାଡ଼ି କେବଳ

ଇକ୍ଷାକୁ— ।

( ୩୯ ) ସେ ଯେବେ ଏ କାର୍ଯ୍ୟରେ ମନ—, ତାହାହେଲେ ଏବେ ସବୁକ କାହିଁକି— ?

( ୪୦ ) ଭବଭୂତି ଦାକ୍ଷିଣାତ୍ୟରେ ଜନ୍ମ— ।

୨ । ଉପଯୁକ୍ତ ଶିକନ୍ତ କ୍ରିୟା ଲଗାଇ ନିମ୍ନଲିଖିତ ଖଣ୍ଡ-ବାକ୍ୟମାନଙ୍କୁ ପୂର୍ଣ୍ଣ କର ।

( ୧ ) ସେ ତାହାଙ୍କର କ୍ରୋଧ— ।

( ୨ ) ବଣିକ ଅପଣା ମୂଳଧନକୁ ସର୍ବଦା — ।

(୩) ମାଧବ ବଡ଼ ଅହଂକାରୀ, ସବୁବେଳେ ଅପଣା ବିଦ୍ୟା—

( ୪ ) ସେ ପତ୍ର ସେ ଲେଖି ଥିଲେ ପ୍ରମାଣ ମାତ୍ର ମୁ— ।

( ୫ ) ସେ ଦୁହିଙ୍କ ମଧ୍ୟରେ ବନ୍ଧୁ ହେବାରୁ ବିବାଦ ଥିଲା, ମୁ ପରେକୁ ପୁଣି ଦୂର କରିଙ୍କୁ— ।

( ୬ ) ଧରଣୀଧର ବୃକ୍ଷରୁ ଦୁଇଟା ଫଳ— ।

( ୭ ) ଇନ୍ଦ୍ର ମଦନଙ୍କୁ ଅପଣା ସିଂହାସନର ଏକପାର୍ଶ୍ୱରେ—

( ୮ ) ମନ୍ତ୍ରୀ ରାଜାଙ୍କ ସମ୍ମୁଖରେ ଏ କଥା— ।

( ୯ ) ରାଜା ଅପରାଧୀର ବନ୍ଧନ— ।

( ୧୦ ) ହାତୀକୁ ହାତୀ— ।

୩ । (କ) ଅତ୍ମହତ୍ୟା—ଉଚିତ ନୁହେ ।

(ଖ) ଅତ୍ମହତ୍ୟା କରିବାର ଉଚିତ ନୁହେ ।

ଏଠାରେ ଯେମନ୍ତ କରିବାର ଏହି କ୍ରିୟାବାଚକ ବିଶେଷ୍ୟ ଦ୍ୱାରା (କ) ଚିହ୍ନିତ ଖଣ୍ଡବାକ୍ୟ ପୂର୍ଣ୍ଣ ହେଲା ନିମ୍ନଲିଖିତ ଖଣ୍ଡ-ବାକ୍ୟ ଗୁଡ଼ିକୁ ସେହିରୂପେ ପୂର୍ଣ୍ଣ କର ।

( ୧ ) ପରକୁ ଦୁଃଖ—ଉଚିତ ନୁହେ ।

( ୨ ) ହଳରେ ଅଧିକ—ମନ୍ଦ ।

( ୩ ) ରାତ୍ରରେ ଅଧିକ—ମନ୍ଦ ।

(୪) କଟୁ କଥା—ଅନୁଚିତ ।
(୫) ଅନ୍ୟର ଭ୍ରମ ଦେଖି ଆପଣା ଭ୍ରମ—ଉଚିତ ।
(୬) ଦତ୍ତଦ୍ରବ୍ୟ—ବଡ଼ ଦୋଷ ।
(୭) ପ୍ରତିଦିନ ପ୍ରାତଃକାଳରେ—ସ୍ୱାସ୍ଥ୍ୟ ପକ୍ଷରେ ଉତ୍ତମ ।
(୮) ଆତ୍ମରକ୍ଷା—ପ୍ରାଣୀର ସ୍ୱଭାବସିଦ୍ଧ ଅଟେ ।
(୯) ପରର ଦ୍ରବ୍ୟ—ତାହାଙ୍କର ଦୃଷ୍ଟି ନାହିଁ ।
(୧୦) ଅତଥିଙ୍କୁ—ସେ ସର୍ବଦା ତତ୍ପର ।
(୧୧) ରୋଗୀକୁ ଔଷଧ ଦେଇ ସୁସ୍ଥ—ଯେ ସେ ମହାପୁଣ୍ୟ ।
(୧୨) ତାଙ୍କ—ସିନା ଏତେ କଥା ହେଲା ।
(୧୩) ସ୍ତ୍ରୀର ସଂଦ୍ରରେ ନା—କିଛି ପୌରଷ ନାହିଁ ।
(୧୪) ମନ ମଧ୍ୟରେ କ୍ରୋଧକୁ—ନୀଚଲୋକର କାର୍ଯ୍ୟଅଟେ ।
(୧୫) ଗୋଟିଏ ଘର ଗଢ଼ିବାଠାରୁ—ସହଜ ।

୪ । (୧) ନଥିଲା ଲୋକଙ୍କର ଯେତେ କଷ୍ଟ ।
(୨) ଶରଣ ନେଇଥିବା ଲୋକର କେବେ ଅନିଷ୍ଟ ନକର ।

ନିମ୍ନଲିଖିତ ଉଦାହରଣ ଦ୍ୱୟରେ ଥିଲା ଏବଂ ନେଇଥିବା ଏ ଦୁଇଟି କ୍ରିୟାବାଚକ ବିଶେଷଣ । ପ୍ରଥମ ଉଦାହରଣରେ କ୍ରିୟା ଅକର୍ମକ ହେବା ହେତୁରୁ ବିଶେଷଣ ଅକର୍ମକ; ଏବଂ ଦ୍ୱିତୀୟ ଉଦାହରଣରେ କ୍ରିୟା ସକର୍ମକ ହେବାରୁ ବିଶେଷଣ ସକର୍ମକ ହୋଇଅଛି । ଉକ୍ତ ଉଦାହରଣର ଆଦର୍ଶରେ ନିମ୍ନଲିଖିତ କ୍ରିୟା ଗୁଡ଼ିକୁ ବିଶେଷଣରୂପେ ବ୍ୟବହାର କରି ବାକ୍ୟ ରଚନା କର ।

ଖାଇବା, ଥିବା, ଆସିବା, ରହିବା, ବସିବା, ହସିବା, ମରିବା, ପାଳିବା, ନେବା, କରିବା ।

୫ । ନିମ୍ନଲିଖିତ ଖଣ୍ଡବାକ୍ୟମାନଙ୍କର ଶୂନ୍ୟସ୍ଥଳରେ କ୍ରିୟାବାଚକ ବିଶେଷଣ ବ୍ୟବହାର କରି ବାକ୍ୟ ପୂର୍ଣ୍ଣକର ।

(୧) ସଡ଼କ ପାଖରେ—ଗ୍ରାମମାନଙ୍କରେ ମାଳିଭଦ୍ର ଉପସ୍ଥିତ ହୋଇଅଛି ।

(୨) ସହରରେ ଭଣି—ଲୋକଙ୍କର ସଂଖ୍ୟା ଅଧିକ ।
(୩) ଯେ ଭୁକାର୍ଯ୍ୟ କଲ ସେ ଲଜ୍ଜିତ ନହେଲ—ଲୋକେ ଲଜ୍ଜିତ ହେଲେ ।
(୪) ଏଭୂମୃଭ—କଥା ସିନା !
(୫) —ଲୋକ ଉପରେ ପ୍ରହାର କଲେ ଭଣ ହେବ ।
(୬) ବଦ୍ୟାଠ ଅଭ୍—ପଦାର୍ଥ ନୁହେ ।
(୭) ଧ୍ରହଣ୍ଡ ଘଡ଼କର—ଲୋକଙ୍କୁ ସାବଧାନ କରଇ ଦେଲ ।
(୮) —ଜଳ ସ୍ଥିରଜଳ ଅପେକ୍ଷା ନିର୍ମଳ ।
(୯) ସ୍ନାନ—ଲୋକଙ୍କ ମଧ୍ୟରୁ କଣକୁ କୁମ୍ଭୀର ଧରଲ ।
(୧୦) ଘ୍ରଭ—ଲୋକ ଘରଭକଷ୍ଟ ଜାଣେ ।—
୬ । (କ) ସେ ଗଲେ ।
(ଖ) ସେ ପଳାଇ ଗଲେ ।
(ଗ) ସେ ଶତ୍ରୁକୁ ମାରଗଲେ ।

ଅସମାପିକା କ୍ରିୟା ପ୍ରୟୋଗ ଦ୍ୱାରା (କ) ଚଭିତ ବାକ୍ୟ ବର୍ଦ୍ଧିତ ହୋଇ (ଖ) ଅଭ୍ (ଗ) ଭଭିତ ବାକ୍ୟରେ ପରଣତ ହେଲ । (ଖ) ଚଭିତ ବାକ୍ୟର ଅସମାପିକା କ୍ରିୟା ଅକର୍ମକ । (ଗ) ଚଭିତ ବାକ୍ୟ ତାହା ସକର୍ମକ ହେବାରୁ ଶତ୍ରୁକୁ ଏହ କର୍ମପଦ ଲାଗିଲା । ଏହ ଆଦର୍ଶ ଅନୁକରଣରେ ନମ୍ନଲଖିତ ବାକ୍ୟ ଗୁଡ଼ିକୁ ସକର୍ମକ ଏବ ଅକର୍ମକ ଉଭୟ ପ୍ରକାର ଅସମାପିକା କ୍ରିୟା ପ୍ରୟୋଗ ଦ୍ୱାରା ପରବର୍ଦ୍ଧିତ କର ।

(୧) ଦଳୀପ ବଶିଷ୍ଠଙ୍କ ଆଶ୍ରମକୁ ଗଲେ ।
(୨) ଚନ୍ଦ୍ରାପୀଡ଼ ଅରଣ୍ୟରେ ପ୍ରବେଶ ହେଲେ ।
(୩) ଦୁଷ୍ମନ୍ତ ଶକୁନ୍ତଳାକୁ କହଲେ ।
(୪) ହରଣ ସିଂହ ଗର୍ତ୍ତରେ ପଶିଲ ।
(୫) ବ୍ୟାଧ ଶର ସନ୍ଧାନ କଲ ।

( ୬ ) ରାଜା ସୈନ୍ୟଙ୍କୁ ଦଣ୍ଡ ଦେଲେ ।
( ୭ ) ପକ୍ଷୀ ରବ ଦେଲା ।
( ୮ ) କମଳ ପ୍ରସ୍ଫୁଟିତ ହେଲା ।
( ୯ ) ରୋଗୀ ଅସ୍ଥିର ହେଲା ।
( ୧୦ ) ବୈଦ୍ୟ ଔଷଧ ଦେଲେ ।
( ୧୧ ) ବଜ୍ର ଶାନ୍ତ ହେଲା ।
( ୧୨ ) ଲଘା ପଲ୍ଲବଲା ।
( ୧୩ ) ଅରଙ୍ଗଜେବ ସିଂହାସନ ଅଧିକାର କଲେ ।
( ୧୪ ) କାଠ କୂଳରେ ଲାଗିଲା ।
( ୧୫ ) ସେ ବିରକ୍ତ ହେଲେ ।

୭ । ( କ ) ସେ କହିଲେ ।
( ଖ ) ସେ ଯାଉଁ ଯାଉଁ କହିଲେ ।

ଅସମାପିକା କ୍ରିୟା ଯୋଗରେ ( କ ) ଗଠିତ ବାକ୍ୟ ରୂପାନ୍ତରିତ ହୋଇ ( ଖ ) ଗଠିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

( ୧ ) ସର୍ପ ଦଂଶନ କଲା ।
( ୨ ) କଥା କହିବ ନାହିଁ ।
( ୩ ) ସେ ଚାଲିଗଲେ ।
( ୪ ) ନର୍ତ୍ତକୀ ପଳାଇଗଲା ।
( ୫ ) ସେ ଘୁରିଗଲେ ।
( ୬ ) ରାମ ଲକ୍ଷ୍ମଣଙ୍କୁ ଦେଖିଲେ ।
( ୭ ) ଅର୍ଜ୍ଜୁନ ପର୍ବତରେ ପଡ଼ିଗଲେ ।
( ୮ ) ଲୋକେ ଲେଖକ ହୁଅନ୍ତି ।
( ୯ ) ବୃଦ୍ଧ ବସିଲେ ।
( ୧୦ ) ସେ ମଲେ ।

୮ । ( କ ) ସଖୀ ବିନ୍ଧ ହୋଇ ଗଲା ।

( ଖ ) ସେ ଯାଉଁ ଯାଉଁ ମୁଣ୍ଡ ଭଗ୍ନ ହୋଇ ଗଲା ।

ଏହି ଆଦର୍ଶର ଅନୁକରଣରେ ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ପରିବର୍ତ୍ତିତ କର ।

( ୧ ) ହାତ କାଟିଗଲା ।
( ୨ ) ମହାଦେବ ବାହାରିଲେ ।
( ୩ ) ଅଗ୍ନି ବାହାରିଲା ।
( ୪ ) ଦୀପ ଲିଭିଗଲା ।
( ୫ ) ସେମାନେ କଳହ କଲେ ।

୯ । ( କ ) ମୁଁ ଯିବ ।

( ଖ ) ସେ ଅଟିଲେ ମୁଁ ଯିବ ।

ଏହି ଆଦର୍ଶର ଅନୁକରଣରେ ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ପରିବର୍ତ୍ତିତ କର ।

( ୧ ) ସେ ପଳାଇବେ ।
( ୨ ) କେଉଁଠାରୁ କି ସ୍ଥିର ଥାଏ ?
( ୩ ) ମୁଁ ଚାଲିପାରିବ ନାହିଁ ।
( ୪ ) ଶତ୍ରୁ କି ଛାଡ଼ି ଦେବ ?
( ୫ ) ଚନ୍ଦ୍ର ରଙ୍ଗ ହୋଇ ଯାଏ ।
( ୬ ) ସେ କର୍ମ ପରିତ୍ୟାଗ କରିବେ ।
( ୭ ) ଦେହ ଶୀର୍ଣ୍ଣ ହୋଇ ଯାଏ ।
( ୮ ) ଅଙ୍ଗ ଅବଶ ହୋଇଯାଏ ।
( ୯ ) ମନ ଫୁଲି ଯାଏ ।
( ୧୦ ) ପିମ୍ପୁଡ଼ି ମରନ୍ତି ।
( ୧୧ ) ସଂସାର ଅରଣ୍ୟ ପ୍ରାପ୍ତ ହୁଏ ।
( ୧୨ ) କିଛି ଭଲ ଲାଗେ ନାହିଁ ।
( ୧୩ ) ଦଣ୍ଡ ହୁଏ ।
( ୧୪ ) ବର୍ଷା ହୁଏ ।

( ୧୫ ) କୁମୁଦ ଫୁଟିଛି ।

୧୦ । ( କ ) କୃଷ୍ଣ ଅର୍ଜୁନଙ୍କୁ—ଉପଦେଶ ଦେଲେ :—

( ଖ ) କୃଷ୍ଣ ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ଉପଦେଶ ଦେଲେ ।

ଏହି ଆଦର୍ଶର ଅନୁକରଣରେ ନିମ୍ନଲିଖିତ ଖଣ୍ଡ ବାକ୍ୟମାନଙ୍କୁ ପୂର୍ଣ୍ଣ କର ।

( ୧ ) —ତାହାଙ୍କର ଆଦେଶ ନ ହେଲା ।

( ୨ ) —ମୋହର ବଳ ନାହିଁ ।

( ୩ ) —ସେ ନ ଦେଲେ ।

( ୪ ) —କିଏ କହୁଛି ?

( ୫ ) —ସେ କହିଲେ ।

( ୬ ) —ଏଠାରେ ବାରଣ ଅଛି ।

( ୭ ) —ତାହାଙ୍କର ଅବକାଶ ନାହିଁ ।

( ୮ ) —ମୋହର ପ୍ରବୃତ୍ତି ନ ହେଲା ।

( ୯ ) —ମୋତେ ଲଜ୍ଜା ହେଲା ।

( ୧୦ ) —ଖଣ୍ଡିଏ ଲୁଗା ନାହିଁ ।

## ୧ମ ଅଧ୍ୟାୟ—ପଞ୍ଚମ ସାଧନା ।

୧ । ନିମ୍ନଲିଖିତ ଖଣ୍ଡବାକ୍ୟମାନଙ୍କରେ କ୍ରିୟା ବିଶେଷଣ ଦେଇ ବାକ୍ୟ ସମ୍ପୂର୍ଣ୍ଣ କର ।

• ସେ—ମୂର୍ଖ ହୋଇ ରହିବେ । ତାହାଙ୍କୁ—କହିଲେ । ଯିବାକୁ ଗୃହକୁ—ଗମନ କଲି । ମୋହର ଯିବାର ଅଛି । ରାବଣ—ସୀତାଙ୍କ କୁଟୀର ନିକଟରେ ଉପସ୍ଥିତ ହେଲା । ତାହାଙ୍କ ସଙ୍ଗେ—ସାକ୍ଷାତ ହୁଏ । ସେ କହିଲେ ଯେଣୁକୁ ତାହାଙ୍କର ମନୋ-ଭିତ—ଜଣାଗଲା । ବସନ୍ତ କାଳରେ ବାୟୁ—ବହଇ । ମେଘ—ଜଳୁଥିଲା । —ହେଲେ—ହେବ । ସେ ଏକି ଅନ୍ୟରେ ହେବେ ନାହିଁ,—ରହିବେ ।

୬ । ନିମ୍ନଲିଖିତ କ୍ରିୟାବିଶେଷଣ ଗୁଡ଼ିକୁ ବ୍ୟବହାର କରି ବାକ୍ୟ ରଚନା କର ।

ଅତ୍ୟନ୍ତ, ସର୍ବଦା, ଏକଦା, ଥରେ, ଏକତ୍ର, ବୃଥା, ସର୍ବତ୍ର, ଅନବରତ, ବାରମ୍ବାର, ଶୀଘ୍ର, ପୁଣି, ଚଞ୍ଚଳ, ହଠାତ୍, ଅନାୟାସ, ପରସ୍ପର, ସହସା, ସତ୍ୱର, ଏକାବେଳକେ, ସେପରି ଭଲ ।

୭ । ନିମ୍ନଲିଖିତ ଖଣ୍ଡବାକ୍ୟରେ ବିଶେଷଣର ବିଶେଷଣ ଦେଇ ବାକ୍ୟ ସମ୍ପୂର୍ଣ୍ଣ କର ।

ସେ—ଦୁଷ୍ଟଲୋକ । ତାହାଙ୍କର ଆଚରଣ ମନ୍ଦ । ବିକ୍ରମ—ମନ୍ଦ ଚରିତ୍ରର ଲୋକ ଥିଲେ । —ନୀଳବର୍ଣ୍ଣ ନବ ମେଘ—ସୁନ୍ଦର ଦିଶେ । ସେ—ମନ୍ଦଲୋକ ତାହାଙ୍କ ସହିତ ବ୍ୟବହାର କରିବାର ଉଚିତ ନୁହେଁ । ଦମୟନ୍ତୀ—ରୂପବତୀ ଥିଲେ । —ପ୍ରଫୁଲ୍ଲ ପଦ୍ମ—ସୁନ୍ଦର ।

---

## ପ୍ରଥମ ଅଧ୍ୟାୟ ।

### ୬ଷ୍ଠ ସାଧନୀ ।

୧ । ନିମ୍ନଲିଖିତ ଖଣ୍ଡବାକ୍ୟ ଗୁଡ଼ିକରେ ଉପଯୁକ୍ତ ଅବ୍ୟୟ ପଦ ଦେଇ ବାକ୍ୟ ପୂର୍ଣ୍ଣ କର ।

(୧) ରାବଣ ଛଦ୍ମବେଶରେ ପଞ୍ଚବଟୀକୁ ଆସିଲେ—ସୀତାଙ୍କୁ ହରଣ କଲେ ।

(୨) ରାମ ଅତ୍ୟନ୍ତ ଶୋକାନ୍ୱିତ ହୋଇ ସୀତାଙ୍କୁ ଖୋଜିଲେ, —ପାଇଲେ ନାହିଁ ।

(୩) ସବୁ ଋତୁ ମଧ୍ୟରେ ଶରତ—ବସନ୍ତ ଅତି ମନୋହର ।

(୪) ରାତ୍ରିରେ ଚନ୍ଦ୍ର—ନକ୍ଷତ୍ର ଆକାଶର ଶୋଭା ସମ୍ପାଦନ କରନ୍ତି ।

(୫) ବାଲ୍ମୀକି ମୁନି ପୁଷ୍ପ, କୁଶାଦଳ—ହୋମଦ୍ରବ୍ୟ ନେଇ ଆସୁଥିଲେ ।

(୬) ଇହାଙ୍କର—ଏପରି କ୍ଷମତା ଅଛି, ସେ ତାହାଙ୍କ କଷ୍ଟ ପାଉ ଅଛନ୍ତି ।

(୭) ଘର ହବିଲେ ସେଥିରେ ମୋହର କୌଣସି ଦୁଃଖନାହିଁ,—ବାନରମାନେ ହସିବେ ଏହା ମୁ ସହି ପାରିବ ନାହିଁ ।

(୮) ଯେ ହବଳବାନ ସତ୍ୟ,—ସେ ପଶୁ ବ୍ୟତୀତ ଅନ୍ୟ କିଛି ନୁହେ ।

(୯) ହୁକୁମ ଦେଲ—ନାଜର ଏବିଷୟର ବହିତ ବନ୍ଦୋବସ୍ତ କରିବେ ।

(୧୦) ସେ ଯାହା ପ୍ରାର୍ଥନା କଲେ ତାହା ପାଇଲେ,—ତାହାଙ୍କର ମନ ତୃପ୍ତ ନହେଲା ।

(୧୧) ସେ ଏଡ଼େ ଦୁଷ୍ଟ—ବ୍ରହ୍ମାଣ୍ଡରେ ତାହାଙ୍କ ପରି ଆଉ ଗୋଟିଏ ନାହିଁ ।

(୧୨) ପରଦୁଃଖ ଶୁଣି ଯାହା ମନ ନ ଦ୍ରବିଲା, ତାହାକୁ—।

(୧୩) ମୁ ଯାଇଥିଲି, ସେ ଯାଇ ଥିଲେ—?

(୧୪) ସେ ଯିବେ——ଯିବେ ଏହା ମୁ କହିପାରୁ ନାହିଁ

(୧୫) ତୁମ୍ଭେ—ଗଲେ ଚଳିବ ।

(୧୬) ହେ ଲଙ୍କେଶ୍ୱର ! ସୀତାଙ୍କୁ ପ୍ରତ୍ୟର୍ପଣ କର,—ସବଂଶରେ ମରିବେ ।

(୧୭) ସେ ଅଚିବାରୁ ଏତେ କଥା ହେଲା—?

(୧୮) ମୋତେ ମାର—ମୋ କଥା ଶୁଣ ।

(୧୯) ଯାହାର ମୁ ନିତାନ୍ତ ଅନୁଗତ ଥିଲି, ସେ—ବିପଦବେଳେ ମୋତେ ଚାହିଁଲ ନାହିଁ ।

(୨୦) ବିଧାତା ବାମ ହେଲେ ଏହିପରି—ହୋଇଥାଏ ।

୬ । ନିମ୍ନଲିଖିତ ଅବ୍ୟୟ ଗୁଡ଼ିକୁ ବ୍ୟବହାର କରି ବାକ୍ୟ ରଚନା କର ।

ଏବଂ, କିନ୍ତୁ, ମାତ୍ର, ଯଦି, ବିନା, ଯା, ଯେବେ, ଇତ୍ୟାଦି, ପଶ୍ଚାତେ, ପୂର୍ବା, ମଧ୍ୟ, ଅବା, ଓ, କେଉ, ପ୍ରାୟ, କାହିଁ, ତହିଁ. ଅତଏବ, ଅବା ତ, ନତୁବା, ପ୍ରତି, ଧିକ୍ ।

---

## ପ୍ରଥମ ଅଧ୍ୟାୟ ।

### ୧ମ ସାଧନ ।

### ଦୀର୍ଘୀକରଣ ।

### ପ୍ରଥମ ଉଦାହରଣ ।

ଭୀମ ସଂହାର କଲେ ଏହି ବାକ୍ୟସ୍ଥ କର୍ମକାରକ ଯୋଗେ ଦୀର୍ଘୀକୃତ ହେଲେ ।

ଭୀମ ଦୁର୍ଯ୍ୟୋଧନଙ୍କୁ ସଂହାର କଲେ ।

ବିଶେଷଣ ଯୋଗେ ଦୀର୍ଘୀକୃତ ହେଲେ,

ମହାବୀର ଭୀମ ଦୁଷ୍ଟ ଦୁର୍ଯ୍ୟୋଧନଙ୍କୁ ସଂହାର କଲେ ।

କରଣକାରକ ଯୋଗେ ଦୀର୍ଘୀକୃତ ହେଲେ ,

ମହାବୀର ଭୀମ ଗଦାଦ୍ୱାରା ଦୁଷ୍ଟ ଦୁର୍ଯ୍ୟୋଧନଙ୍କୁ ସଂହାର କଲେ ।

ସମ୍ବନ୍ଧକାରକ ଯୋଗେ ଦୀର୍ଘୀକୃତ ହେଲେ ,

ଯୁଧିଷ୍ଠିରଙ୍କର ଭ୍ରାତା ମହାବୀର ଭୀମ ଗଦାଦ୍ୱାରା ଦୁଷ୍ଟ ଦୁର୍ଯ୍ୟୋଧନଙ୍କୁ ସଂହାର କଲେ ।

କାଳାଧିକରଣ ଯୋଗେ ଦୀର୍ଘୀକୃତ ହେଲେ ,

ଯୁଧିଷ୍ଠିରଙ୍କର ଭ୍ରାତା ମହାବୀର ଭୀମ ସନ୍ଧ୍ୟାସମୟରେ ଗଦାଦ୍ୱାରା ଦୁଷ୍ଟ ଦୁର୍ଯ୍ୟୋଧନଙ୍କୁ ସଂହାର କଲେ ।

ସ୍ଥାନାଧିକରଣ ଯୋଗେ ଦୀର୍ଘୀକୃତ ହେଲେ,

ଯୁଧିଷ୍ଠିରଙ୍କର ଭ୍ରାତା ମହାବୀର ଭୀମ ସନ୍ଧ୍ୟାସମୟରେ କୁରୁକ୍ଷେତ୍ରରେ ଗଦାଦ୍ୱାରା ଦୁଷ୍ଟ ଦୁର୍ଯ୍ୟୋଧନଙ୍କୁ ସଂହାର କଲେ ।

ଅସମାପିକା କ୍ରିୟାଯୋଗେ ଦୀର୍ଘୀକୃତ ହେଲେ ,

ଯୁଧିଷ୍ଠିରଙ୍କ ଭ୍ରାତା ମହାବୀର ଭୀମ କ୍ରୋଧରେ ଅଧୀର ହୋଇ ସନ୍ଧ୍ୟାସମୟରେ କୁରୁକ୍ଷେତ୍ରରେ ଗଦାଦ୍ୱାରା ଦୁଷ୍ଟ ଦୁର୍ଯ୍ୟୋଧନଙ୍କୁ ସଂହାର କଲେ ।

ଦ୍ୱିତୀୟ ଉଦାହରଣ ।

ପତ୍ର ପତିତ ହେଲା ।

ବିଶେଷଣ ଯୋଗେ ଦୀର୍ଘୀକୃତ ହେଲେ,

ଶୀର୍ଣ୍ଣପତ୍ର ପତିତ ହେଲା ।

ଅପାଦାନ ଯୋଗେ ଦୀର୍ଘୀକୃତ ହେଲେ,

ବୃକ୍ଷରୁ ଶୀର୍ଣ୍ଣପତ୍ର ପତିତ ହେଲା ।

କାଳାଧିକରଣ ଯୋଗେ ଦୀର୍ଘୀକୃତ ହେଲେ,

ଶୀତଋତୁରେ ବୃକ୍ଷରୁ ଶୀର୍ଣ୍ଣପତ୍ର ପତିତ ହେଲା ।

ସ୍ଥାନାଧିକରଣ ଯୋଗେ ଦୀର୍ଘୀକୃତ ହେଲେ,

ଶୀତଋତୁରେ ବୃକ୍ଷରୁ ଶୀର୍ଣ୍ଣପତ୍ର ଭୂମିରେ ପତିତ ହେଲା ।

ଅସମାପିକା ଯୋଗେ ଦୀର୍ଘୀକୃତ ହେଲେ,

ଶୀତଋତୁରେ ଶୀର୍ଣ୍ଣପତ୍ର ଛିନ୍ନ ହୋଇ ବୃକ୍ଷରୁ ଭୂମିରେ ପତିତ ହେଲା ।

କରଣକାରକ ଯୋଗେ ଦୀର୍ଘୀକୃତ ହେଲେ,

ଶୀତଋତୁରେ ଶୀର୍ଣ୍ଣପତ୍ର ବାୟୁଦ୍ୱାରା ଛିନ୍ନ ହୋଇ ବୃକ୍ଷରୁ ଭୂମିରେ ପତିତ ହେଲା ।

ତୃତୀୟ ଉଦାହରଣ ।

ବିଦ୍ୟା ଦାନକର ।

ସମ୍ବୋଧନ ଯୋଗେ ଦୀର୍ଘୀକୃତ ହେଲେ,

ହେ ପଣ୍ଡିତ ! ବିଦ୍ୟାଦାନ କର ।

ସମ୍ପ୍ରଦାନ ଯୋଗେ ଦୀର୍ଘୀକୃତ ହେଲେ,

ହେ ପଣ୍ଡିତ ! ଛାତ୍ରମାନଙ୍କୁ ବିଦ୍ୟା ଦାନକର ।

କ୍ରିୟା ବିଶେଷଣ ଯୋଗେ ଦୀର୍ଘୀକୃତ ହେଲେ ,

ହେ ପଣ୍ଡିତ ! ଛାତ୍ରମାନଙ୍କୁ ଯତ୍ନପୂର୍ବକ ବିଦ୍ୟା ଦାନ କର ।

ବିଶେଷଣ ଯୋଗେ ଦୀର୍ଘୀକୃତ ହେଲେ ।

ହେ ପଣ୍ଡିତ ! ନିଜ ଛାତ୍ରମାନଙ୍କୁ ଯତ୍ନପୂର୍ବକ ବିଦ୍ୟା ଦାନକର ସକର୍ମକ ସମାପିକା କ୍ରିୟାଯୋଗେ ଦୀର୍ଘୀକୃତ ହେଲେ ;

ହେ ପଣ୍ଡିତ ! ମନଦେଇ ନିଜଛାତ୍ରମାନଙ୍କୁ ଯତ୍ନପୂର୍ବକ ବିଦ୍ୟା ଦାନକର ।

ସମ୍ବନ୍ଧକାରକ ଯୋଗେ ଦୀର୍ଘୀକୃତ ହେଲେ ,

ହେ ପଣ୍ଡିତ ! ନିଜ ଛାତ୍ରମାନଙ୍କର ମନଦେଇ ଯତ୍ନପୂର୍ବକ ସେମାନଙ୍କୁ ବିଦ୍ୟା ଦାନ କର ।

ନିମ୍ନପ୍ରଦର୍ଶିତରୂପେ ମନମଧ୍ୟରେ ପ୍ରଶ୍ନକଲେ ବାକ୍ୟର ଦୀର୍ଘୀକରଣ ସହଜରେ ସମ୍ପାଦିତ ହୋଇପାରେ ।

୧ମ ଉଦାହରଣ ।

ପଦ୍ମ ପ୍ରସ୍ଫୁଟିତ ହେଲା ।

କେମନ୍ତ ପଦ୍ମ ପ୍ରସ୍ଫୁଟିତ ହେଲା ? ( ଏହାର ଉତ୍ତର ଗୋଟିଏ ବିଶେଷଣପଦ ହେବ ) ରକ୍ତପଦ୍ମ ପ୍ରସ୍ଫୁଟିତ ହେଲା ।

କାହାଦ୍ୱାରା ପ୍ରସ୍ଫୁଟିତ ହେଲା ? ( ଏହାର ଉତ୍ତର ଗୋଟିଏ କରଣପଦ ହେବ ) କିରଣଦ୍ୱାରା ରକ୍ତପଦ୍ମ ପ୍ରସ୍ଫୁଟିତ ହେଲା ।

କାହା କିରଣଦ୍ୱାରା ପ୍ରସ୍ଫୁଟିତ ହେଲା ? ( ଏହାର ଉତ୍ତର ଗୋଟିଏ ସମ୍ବନ୍ଧପଦ ହେବ ) ସୂର୍ଯ୍ୟଙ୍କର କିରଣଦ୍ୱାରା ରକ୍ତପଦ୍ମ ପ୍ରସ୍ଫୁଟିତ ହେଲା ।

କେଉଁଠାରେ ପ୍ରସ୍ଫୁଟିତ ହେଲା ? ( ଏହାର ଉତ୍ତର ଗୋଟିଏ ସ୍ଥାନାଧିକରଣ ହେବ ) ସୂର୍ଯ୍ୟଙ୍କର କିରଣଦ୍ୱାରା ସରୋବରରେ ରକ୍ତପଦ୍ମ ପ୍ରସ୍ଫୁଟିତ ହେଲା ।

କେତେବେଳେ ପ୍ରସ୍ଫୁଟିତ ହେଲା ? ( ଏହାର ଉତ୍ତର

ଗୋଟିଏ ସ୍ତ୍ରୀନୀଧିକରଣ ହେବ ) ପ୍ରଭାତ ସମୟରେ ସୂର୍ଯ୍ୟଙ୍କର କିରଣଦ୍ୱାରା ସରୋବରରେ ରକ୍ତପଦ୍ମ ପ୍ରସ୍ଫୁଟିତ ହେଲା ।

କିପରି ପ୍ରସ୍ଫୁଟିତ ହେଲା ? ( ଏଦ୍ୱାର ଉତ୍ତର ଗୋଟିଏ କ୍ରିୟା ବିଶେଷଣ ହେବ ) ପ୍ରଭାତ ସମୟରେ ସୂର୍ଯ୍ୟଙ୍କର କିରଣ ଦ୍ୱାରା ସରୋବରରେ ରକ୍ତପଦ୍ମ ଧୀରେ୨ ପ୍ରସ୍ଫୁଟିତ ହେଲା ।

୨ୟ ଉଦାହରଣ ।

ରାମ ଗମନ କଲେ ।

କେଉଁଠାରୁ ଗମନ କଲେ ? ( ଏଦ୍ୱାର ଉତ୍ତର ଗୋଟିଏ ଅପାଦାନ ପଦ ହେବ )

ରାମ ଅଯୋଧ୍ୟାରୁ ଗମନ କଲେ ।

କଅଣକରି ଗମନ କଲେ ? ( ଏଦ୍ୱାର ଉତ୍ତର ଗୋଟିଏ ସକର୍ମକ ଅସମାପିକା କ୍ରିୟା ହେବ )

ଧନ ଦେଇ ରାମ ଅଯୋଧ୍ୟାରୁ ଗମନ କଲେ ।

କେତେ ଧନ ଦେଇ ଗମନ କଲେ ? ( ଏଦ୍ୱାର ଉତ୍ତର ଗୋଟିଏ ବିଶେଷଣପଦ ହେବ )

ପ୍ରଚୁର ଧନ ଦେଇ ରାମ ଅଯୋଧ୍ୟାରୁ ଗମନ କଲେ ।

କାହାକୁ ଦେଇ ଗମନ କଲେ ? ( ଏଦ୍ୱାର ଉତ୍ତର ଗୋଟିଏ ସମ୍ପ୍ରଦାନ ହେବ )

ବ୍ରାହ୍ମଣଙ୍କୁ ପ୍ରଚୁର ଧନ ଦେଇ ରାମ ଅଯୋଧ୍ୟାରୁ ଗମନ କଲେ ।

ଉଲ୍ଲିଖିତ ଆଦର୍ଶମାନଙ୍କର ଅନୁକରଣରେ ନିମ୍ନଲିଖିତ ବାକ୍ୟ ସମୂହର ପୂର୍ଣ୍ଣତା ସମ୍ପାଦନ କର ।

(୧) ବାୟୁ ପ୍ରବାହିତ ହେଲା । (୨) ସିଂହ ଗର୍ଜିଲା । (୩) ଅନଳ ଜାତ ହେଲା । (୪) କୌରବମାନେ ଅଭିମନ୍ୟୁଙ୍କୁ ଆକ୍ରମଣ କଲେ । (୫) ଲକ୍ଷ୍ମଣ ସଙ୍ଗରେ ଗଲେ । (୬) ଦୁର୍ବାସା ଅଭିଶାପ ଦେଲେ । (୭) ଅର୍ଜୁନଙ୍କର ମୃତ୍ୟୁ ହେଲା । (୮) ନୀଳ

ନଦ ପ୍ରବାହିତ ହେଉଅଛି । ( ୯ ) ଚନ୍ଦ୍ର ଉଦିତ ହେଲେ । (୧୦) ବିସୂଚିକା ପ୍ରବଳ ହୁଏ । (୧୧) ସୀତା ରୋଦନ କଲେ । (୧୨) ଅଶ୍ରୁପାତ ହେଲା । (୧୩) ଜୟଦ୍ରଥ ହରଣ କଲେ । ( ୧୪ ) କୃଷ୍ଣ ସାରଥି ହେଲେ । ( ୧୫ ) ପଢ଼ିବାର ଉଚିତ । (୧୬) ଗହ୍ବର ପ୍ରତିନାଦିତ ହେଲା । (୧୭) ପଦ୍ମାକ୍ଷରରେ ର-ହିଲେ । ( ୧୮ ) ମହାନନ୍ଦ ପୂର୍ଣ୍ଣ ହୁଏ । (୧୯) କେଶ ଶୁକ୍ଳ ହୁଏ । (୨୦) ଦେଉଳ ହଶେ ।

---

## ଦ୍ୱିତୀୟ ଅଧ୍ୟାୟ ।

### ପରିବର୍ତ୍ତନ ଏବଂ ସଂକ୍ଷେପଣ ।

ମନର ଭାବ ପ୍ରକାଶ କରିବା ନିମନ୍ତେ କିରୂପେ ବାକ୍ୟ ପ୍ରସ୍ତୁତ କରିବାକୁ ହେବ ପୂର୍ବ ଅଧ୍ୟାୟରେ ତାହା ପ୍ରଦର୍ଶିତ ହୋଇ ଅଛି । ସେହି ବାକ୍ୟ କିରୂପେ ସଂକ୍ଷିପ୍ତ ଅଥବା ରୂପାନ୍ତରିତ ହେବ ଏହି ଅଧ୍ୟାୟରେ ତାହା ବିବୃତ ହେଉଅଛି ।

ସର୍ବନାମ, କୃତ୍ପ୍ରତ୍ୟୟ, ସନ୍ ପ୍ରଭୃତି ନିଜନ୍ତର କତିପୟ ପ୍ରତ୍ୟୟ, ତଦ୍ଧିତ ପ୍ରତ୍ୟୟ, ଏବଂ ସମାସ ଏହିମାନଙ୍କଦ୍ୱାରା ବାକ୍ୟ ସଂକ୍ଷିପ୍ତ ଅଥବା ରୂପାନ୍ତରିତ ହୁଏ । ସର୍ବନାମଦ୍ୱାରା ବାକ୍ୟର ପୌନରୁକ୍ତ୍ୟ ପରିହାର ହୁଏ । ଏବିଷୟର ଦୃଷ୍ଟାନ୍ତ ପ୍ରତ୍ୟେକ ବ୍ୟାକରଣରେ ସୁଲଭ; ତେଣୁ ଏବିଷୟରେ ଅଧିକ ଲେଖିବାର ପ୍ରୟୋଜନ ନାହିଁ ।

ଅନ୍ୟାନ୍ୟ ପ୍ରକରଣମାନଙ୍କର ଉପଯୋଗିତା ନିମ୍ନରେ ପ୍ରଦର୍ଶିତ ହେଉଅଛି ।

[ କୃତ୍ପ୍ରତ୍ୟୟ ଦ୍ୱାରା ବାକ୍ୟ ରୂପାନ୍ତରିତ ଅଥବା ସଂକ୍ଷିପ୍ତ ହୁଏ, ଯଥା —

ଲୌହ ଖଣିରୁ ଜନ୍ମେ ।

ରୂପାନ୍ତରିତ — ଲୌହ ଖଣିରୁ ଜାତ ହୁଏ ।

ସଂକ୍ଷିପ୍ତ—ଲୌହ ଖଣିଜ ଅଟେ ।

ସନ୍ ପ୍ରତ୍ୟୟ ଦ୍ୱାରା ବାକ୍ୟ ସଂକ୍ଷିପ୍ତ ହୁଏ । ଯଥା—

ତାହାଙ୍କର ପାନକରିବାକୁ ଇଚ୍ଛା ହେଲା ।

ସଂକ୍ଷିପ୍ତ—ତାହାଙ୍କର ପିପାସା ହେଲା ।

ତଦ୍ଧିତ ପ୍ରତ୍ୟୟ ଦ୍ୱାରା ବାକ୍ୟ ସଂକ୍ଷିପ୍ତ ଏବଂ ରୂପାନ୍ତରିତ ହୁଏ । ଯଥା—

ସେ ସରଳ ଅଟନ୍ତି ।

ରୂପାନ୍ତରିତ—ତାହାଙ୍କଠାରେ ସାରଲ୍ୟ ଅଛି ।

ଯେ ବ୍ୟକ୍ତିର ଧନ ଅଛି ସେ ସବୁ କରି ପାରେ ।

ସଂକ୍ଷିପ୍ତ—ଧନୀ ବ୍ୟକ୍ତି ସବୁ କରିପାରେ ।

ସମାସ ଦ୍ୱାରା ବାକ୍ୟ ରୂପାନ୍ତରିତ ଏବଂ ସଂକ୍ଷିପ୍ତ ହୁଏ ।

ଯଥା—ଭୀଷ୍ମଦେବ ଇନ୍ଦ୍ରିୟମାନଙ୍କୁ ଜୟ କରିଥିଲେ ।

ରୂପାନ୍ତରିତ ଏବଂ ସଂକ୍ଷିପ୍ତ—ଭୀଷ୍ମଦେବ ଜିତେନ୍ଦ୍ରିୟ ଥିଲେ । ସମାସଦ୍ୱାରା ମନର ଭାବ ଅତି ସଂକ୍ଷେପରେ ବ୍ୟକ୍ତ ହୁଏ । ଇଂରେଜୀରେ ଯାହାକୁ Adjective sentence (ବିଶେଷଣୀୟ ବାକ୍ୟ ) ବୋଲନ୍ତି ସସ୍ଥଳରେ ସମାସ ଦ୍ୱାରା ତାହା ଗୋଟିଏ ବିଶେଷଣରେ ପରିଣତ ହୁଏ ।

ସବୁସ୍ଥଳରେ ଯେ ସମାସ କରିବାକୁ ହେବ ଏମନ୍ତ ନୁହେ । ଅତି ଦୀର୍ଘସମାସ ସସ୍ଥଳରେ ସୁଦ୍ଧା ଦୂଷଣୀୟ । ଅତି ଦୀର୍ଘସମାସ ପ୍ରୟୋଗ କଲେ ଭାଷା ଦୁର୍ବୋଧ ହୋଇ ଉଠେ । ସଂକ୍ଷିପ୍ତତାର ଅନୁରୋଧରେ ସୁବୋଧତା ଉତ୍ସର୍ଗ କରିବାର ଅନୁଚିତ । ଏହି ବିଷୟରେ କୌଣସି ନିୟମ ନିର୍ଦ୍ଦେଶ କରିବାର ଅସମ୍ଭବ । କେବଳ ଏତିକିମାତ୍ର ବକ୍ତବ୍ୟ ଯେ ସମାସଦ୍ୱାରା ଯେଉଁ ସ୍ଥଳରେ ଶ୍ରୁତିକଟୁତା ଏବଂ ଦୁର୍ବୋଧତା ହେବାର ସମ୍ଭାବନା ଏମନ୍ତ ସ୍ଥଳରେ ସମାସ କରିବାର ଉଚିତ ନୁହେ । ଦୂର ଗୃହ ଖଣ୍ଡି

ସାହିତ୍ୟ ଗ୍ରନ୍ଥ ପଢ଼ିଲେ ଏବିଷୟରେ ଛାତ୍ରମାନଙ୍କର ଜ୍ଞାନ ସ୍ୱତଃ ଜନ୍ମିବ । ଆମ୍ଭେମାନେ କେବଳ ଗୋଟିଏ ଯୋଡ଼ିଏ ଦୃଷ୍ଟାନ୍ତ ଦେଇ ପ୍ରକୃତ ପ୍ରସ୍ତାବର ଅବତାରଣା କରୁଁ ।

### ୧ମ ଉଦାହରଣ ।

ଜଗତକୁ ଅଭୟଦାନ କରିବାର ରାମଚନ୍ଦ୍ରଙ୍କର ବ୍ରତଥିଲା ।

ଏହି ବାକ୍ୟକୁ ସମାସଦ୍ୱାରା ନିମ୍ନଆକାରରେ ପରିଣତ କରାଯାଇ ପାରେ ।

ରାମଚନ୍ଦ୍ର ଜଗଦଭୟଦାନବ୍ରତ ଥିଲେ । ମାତ୍ର ଉତ୍କଳଭାଷାରେ ଏପରି ଦୀର୍ଘସମାସ ଦୂଷଣୀୟ । ସୁତରାଂ ଏପରି ସମାସ ପ୍ରୟୋଗ କରିବାର ଅବିହିତ ଅଟେ ।

ପରନ୍ତୁ ସମାସ ପ୍ରୟୋଗ ବିଷୟରେ ପ୍ରଚଳିତ, ଅପ୍ରଚଳିତ ବିଚାରିବାର ଉଚିତ ।

### ୨ୟ ଉଦାହରଣ ।

ଅୟଂହି ରୁଚିରସ୍ତସ୍ୟାଃ କାଲୋରୁଚିରକାନନଃ ।

ସମାସ ରଖି ଏହି ପଂକ୍ତିକୁ ଓଡ଼ିଆରେ ଅନୁବାଦ କଲେ ଏହି ପରି ହେବ—

ଏହି ରୁଚିରକାନନ ସମୟ ତାହାଙ୍କର ଅତ୍ୟନ୍ତ ପ୍ରିୟ ଅଟେ ।

ମାତ୍ର ଉତ୍କଳଭାଷାରେ ଏପରି ସମାସର ବ୍ୟବହାର ନଥିବାରୁ ତାହା ଦୂଷଣୀୟ ଅଟେ । ଉଚିତ ଅନୁବାଦ ନିମ୍ନପ୍ରକାର ହେବ—

ଏହି ସମୟରେ କାନନ ଅତ୍ୟନ୍ତ ରୁଚିର ଦିଶେ, ଏହି ସମୟ ତାହାଙ୍କର ଅତି ପ୍ରିୟ ସମୟ ଅଟେ ।

### ୩ୟ ଉଦାହରଣ ।

ଆହାରେ ବ୍ୟବହାରେଚ ତ୍ୟକ୍ତ ଲଜ୍ଜାଃ ସୁଖୀ ଭବେତ୍ ।

ସମାସ ରଖି ଏହି ବାକ୍ୟକୁ ଓଡ଼ିଆରେ ଅନୁବାଦ କଲେ ନିମ୍ନପ୍ରକାର ହେବ ।

ଆହାର ଏବଂ ବ୍ୟବହାରରେ ଚ୍ୟୁଲ୍ଲଜ୍ଞ ଲୋକ ସୁଖୀ ହୁଏ । ମାତ୍ର ଓଡ଼ିଆରେ ଏପରି ପ୍ରୟୋଗ ଅପ୍ରଚଳିତ ହେବା ହେତୁରୁ ଦୂଷ୍ୟ ଅଟେ । ଏହାର ଉଚିତ ଅନୁବାଦ ନିମ୍ନପ୍ରକାର ହେବ—

ଆହାର ଏବଂ ବ୍ୟବହାର ବିଷୟରେ ଯେ ବ୍ୟକ୍ତି [illegible] କରେ ସେ ସୁଖୀ ହୁଏ ।

୪ ର୍ଥ ଉଦାହରଣ ।

ତାହାଙ୍କଠାରେ ମୁଦ୍ରା ଅଛି ।

ସମାସ କଲେ ଏହି ବାକ୍ୟ ନିମ୍ନଆକାର ଧାରଣ କରିବ ।

ସେ ସମୁଦ୍ର ଅଟନ୍ତି ।

ଏପରି ହେଲେ ବ୍ୟାକରଣ ଦୋଷ ହେବ ନାହିଁ ସତ୍ୟ ମାତ୍ର ଦୁର୍ବୋଧ ଏବଂ ଅପ୍ରଚଳିତ ହେବା ହେତୁରୁ ଉତ୍କଳ ଭାଷାରେ ଏପରି ସମାସ ଦୂଷଣୀୟ ହେବ ।

---

୨ୟ ଅଧ୍ୟାୟ—୧ମ ସାଧନୀ ।

୧ । (କ) ସେ ଯାଉଅଛି ।

(ଖ) ସେ ଗମନ କରୁଅଛି ।

(କ) ଚିହ୍ନିତ ବାକ୍ୟର କ୍ରିୟାକୁ ଧାତ୍ୱନ୍ତରେ ପରିଣତ କରାବାରୁ ବାକ୍ୟ ରୂପାନ୍ତରିତ ହୋଇ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟଗୁଡ଼ିକୁ ସେହିପ୍ରକାରେ ପରିଣତ କର ।

(୧) ରାଜା ଶୋଇ ଅଛନ୍ତି ।

(୨) ହସ୍ତୀ ତଣ୍ଡୁଳ ଖାଉଅଛି ।

(୩) ବୀରମାନେ ଅସ୍ତ୍ର ଧରି ଅଛନ୍ତି ।

(୪) କୋକିଳ ରଡ଼ୁ ଥିଲା ।

(୫) ରାକ୍ଷସ ଗର୍ଜ୍ଜିଲା ।

(୬) ବୟସ୍ୟ ହସିଲେ ।

( ୭ ) ସେ ଗୋଟିଏ ଅଦ୍ଭୁତ କାର୍ଯ୍ୟ ସାଧିଲେ ।
( ୮ ) ମୁଁ କନ୍ୟା ଦେବି ନାହିଁ ।
( ୯ ) ଦମୟନ୍ତୀ ବୃକ୍ଷରେ ଚଢ଼ିଲେ ।
( ୧୦ ) ମନୁଷ୍ୟମାନେ ଶାଳଗଛରୁ ଛାୟାରେ ବସିଲେ ।
( ୧୧ ) ଶିକ୍ଷକମାନେ ପୁସ୍ତକ ଆଣିଲେ ।
( ୧୨ ) ପୁରବାସୀମାନେ ମଣ୍ଡ ଉଚ୍ଛାଇଲେ ।
( ୧୩ ) ଅଗସ୍ତ୍ୟମୁନି ସମୁଦ୍ର ଶୋଷିଲେ ।
( ୧୪ ) ନର୍ତ୍ତକୀମାନେ ନାଚିଲେ ।
( ୧୫ ) ରାଜା ଶଯ୍ୟାରୁ ଉଠିଲେ ।
( ୧୬ ) ସେ ଚନ୍ଦ୍ର ଦେଖି ଅଛନ୍ତି ।
( ୧୭ ) ବାଲ୍ମୀକି ରାମାୟଣ ରଚିଥିଲେ ।
( ୧୮ ) ଆମ୍ଭେମାନେ ବ୍ୟାକରଣ ପଢ଼ୁଅଛୁଁ ।
( ୧୯ ) ସେ ବସିଲେ ।
( ୨୦ ) ଅମ୍ଭେ ଚଳନ୍ତୁ ।

୧ । (କ) ସେ ପଢ଼ିଲେ ।
(ଖ) ସେ ପଠିତ ହେଲେ ।

(କ) ଚିହ୍ନିତ ବାକ୍ୟର କ୍ରିୟାକୁ କୃ ଧାତୁରେ ପରିଣତ କରିବାରୁ ସେହି ବାକ୍ୟ ରୂପାନ୍ତରିତ ହୋଇ (ଖ) ଚିହ୍ନିତ ବାକ୍ୟ ହେଲା । ନିମ୍ନଲିଖିତ ବାକ୍ୟଗୁଡ଼ିକୁ ସେହିରୂପେ ପରିଣତ କର ।

( ୧ ) ରାମ ଅଯୋଧ୍ୟାକୁ ଫେରି ଆସିଲେ ।
( ୨ ) ଅର୍ଜୁନ ବଞ୍ଚିଲେ ।
( ୩ ) ତାହାଙ୍କର ରୋଗ ଗଲାଣି ।
( ୪ ) ଦମୟନ୍ତୀ ଭୟରେ କମ୍ପିଲେ ।
( ୫ ) ଚନ୍ଦ୍ରାପୀଡ଼ ଜଗିଥିଲେ ।
( ୬ ) ପାଣ୍ଡବଙ୍କର ସମ୍ପଦ ବଢ଼ିଲା ।
( ୭ ) ପ୍ରଦୀପ ଜ୍ୱଳିଲା ।

( ୮ ) ସମସ୍ତ ପଳାଇଲେ ।
( ୯ ) ସୁଗ୍ରୀବଙ୍କର ଗର୍ଜ୍ଜନ ଶୁଣି ଚାରି ଉଠିଲେ ।
( ୧୦ ) ଭଣ୍ଡୁ ଛିଡ଼ିଗଲା ।
( ୧୧ ) ନଦୀ ବଢ଼ିଲା ।
( ୧୨ ) ହନୁମାନ ଲଙ୍କାରୁ ବାହାରିଲେ ।
( ୧୩ ) ସେହି ସ୍ଥାନରୁ ଧବଳଗିରି ଦିଶେ ।
( ୧୪ ) ଭରତ ସିଂହାସନରେ ବସିଲେ ନାହିଁ ।
( ୧୫ ) ବକାସୁର ମଲା ।
( ୧୬ ) ଅଶୋକଫୁଲ ଫୁଟିଲା ।
( ୧୭ ) ଅଗ୍ନି ଲିଭିଗଲା ।
( ୧୮ ) ବ୍ୟାଘ୍ର ଅସନ ଛାଡ଼ି ଉଠିଲେ ।
( ୧୯ ) କୁମ୍ଭରେ ଜଳ ମିଶେ ।
( ୨୦ ) ଗୃହରେ ଅଗ୍ନି ଲାଗିଲା ।
( ୨୧ ) ହସ୍ତୀର ଗଣ୍ଡସ୍ଥଳରୁ ମଦ ଝରିଲା ।
( ୨୨ ) ବାନରମାନେ ମଧୁବନରେ ପଶିଲେ ।
( ୨୩ ) ସାଗର ଉଚ୍ଛୁଳିଲା ।
( ୨୪ ) ଲୁଗା ଚିରିଗଲା ।
( ୨୫ ) ଅସୁରଙ୍କ ଗର୍ଜ୍ଜନ ଶୁଣି ଦେବତାମାନେ ଚମକିଲେ
( ୨୬ ) ମୃଗମାନେ ତୃଷାର୍ତ୍ତ ହୋଇ ଦଉଡ଼ିଲେ ।
( ୨୭ ) ଘର ପୋଡ଼ିଗଲା ।
( ୨୮ ) ଆକାଶରୁ ନକ୍ଷତ୍ର ଖସିଲା ।
( ୨୯ ) ନୌକା ବୁଡ଼ିଲା ।
( ୩୦ ) ବୃକ୍ଷ ପଲ୍ଲବିଲା ।

୩ । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ କର୍ତ୍ତୃବାଚ୍ୟରୁ କର୍ମବାଚ୍ୟରେ ପରିଣତ କର ।

( ୧ ) ସେ ମୋତେ ବଞ୍ଚନା କଲେ ।
( ୨ ) ରାମ ରାବଣକୁ ନାଶ କଲେ ।
( ୩ ) ସୂର୍ଯ୍ୟ ଅଲୋକ ପ୍ରଦାନ କରୁ ଅଛନ୍ତି ।
( ୪ ) ମୁଁ ସେ କାର୍ଯ୍ୟ ସମ୍ପାଦନ କରି ପାରିବ ନାହିଁ ।
( ୫ ) ବ୍ୟାସଦେବ ଅନେକ ଗ୍ରନ୍ଥ ରଚିଥିଲେ ।
( ୬ ) ସେ ଏହି ଅପତ୍ତି ଉତ୍ଥାପନ କଲେ ।
( ୭ ) ଜଗଦୀଶ୍ୱର ଏହି ଜଗତକୁ ସୃଜନ କରି ଅଛନ୍ତି ।
( ୮ ) ମୁଁ ପ୍ରତିଜ୍ଞା ରକ୍ଷା ନ ପାରିଲି ।
( ୯ ) କର୍ଣ୍ଣ ଶକୁନ୍ତଳାଙ୍କୁ ପାଳନ କଲେ ।
(୧୦) ସର୍ପ ତାହାଙ୍କୁ ଦଂଶନ କଲା ।
(୧୧) ପୃଥିବୀ ସବୁ ପଦାର୍ଥକୁ ଅକର୍ଷଣ କରଇ ।
(୧୨) ସେ ମୋତେ ଋଣରୁ ମୋଚନ କଲେ ।
(୧୩) ରାମ ବିଭୀଷଣଙ୍କୁ ଅନୁଗ୍ରହ କଲେ ।
(୧୪) ନଦୀ ଦେଶର ଅନେକ ଉପକାର ସାଧନ କରେ ।
(୧୫) କୃଷ୍ଣ ଶିଶୁପାଳକୁ ହନନ କଲେ ।

୪ । (କ) ସେହି ସ୍ଥାନ ଅପଣଙ୍କର ଦେଖିବାର ଉଚିତ ।
(ଖ) ସେହି ସ୍ଥାନ ଅପଣଙ୍କର ଦ୍ରଷ୍ଟବ୍ୟ ।

କୃତ୍ ପ୍ରତ୍ୟୟ ପ୍ରୟୋଗ ଦ୍ୱାରା (କ) ଚହ୍ନିତ ବାକ୍ୟ ସଂକ୍ଷିପ୍ତ ହୋଇ ଯେମନ୍ତ (ଖ) ଚହ୍ନିତ ବାକ୍ୟରେ ପରିଣତ ହେଲା, ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

(୧) ସେ କାର୍ଯ୍ୟ ଅପଣଙ୍କର କରିବାର ଉଚିତ ।
(୨) ମୋହର ୨୫ ଟଙ୍କା ପାଇବାର ଉଚିତ ।
(୩) ତାହାଙ୍କର ଯୁକ୍ତି ଖଣ୍ଡନ ହେବାର ନୁହେ ।
(୪) ଏହା ସମସ୍ତେ ବାଞ୍ଛା କରନ୍ତି ।
(୫) ଶରୀର ବଦ୍ୟାର ତତ୍ତ୍ୱ ସମସ୍ତଙ୍କର ଅବଶ୍ୟ ଜାଣିବାର ଉଚିତ ।

(୬) ସେ ଯେମନ୍ତ କୁବାକ୍ୟ କହିଲେ ତାହା ବୋଲିବାତ ଉଚିତ ନୁହେ ।

(୭) ଏ ଘଟନାରେ ସମସ୍ତେ ଶୋକ କରିବେ ।

(୮) ଯେଉଁ କର୍ମକୁ ସମସ୍ତେ ନିନ୍ଦା କରିବେ ଏମନ୍ତ କର୍ମ ପରିହାର କରିବାର ଉଚିତ ।

(୯) ସମସ୍ତେ ତାହାଙ୍କୁ ପ୍ରଶଂସା କରିବେ ।

(୧୦) ଧନରେ ତାହାଙ୍କର ସ୍ପୃହା ନାହିଁ ।

୫ । (କ) ସେ ଗାନ କରନ୍ତି ।

(ଖ) ସେ ଗାୟକ ଅଟନ୍ତି ।

(କ) ଚିହ୍ନିତ ବାକ୍ୟ କୃତ୍‌ପ୍ରତ୍ୟୟ ଦ୍ୱାରା ରୂପାନ୍ତରିତ ହୋଇ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

(୧) ଭୀମ ବିରାଟ ରାଜାଙ୍କ ଗୃହରେ ପାକ କରୁଥିଲେ ।

(୨) ଜଗଦୀଶ୍ୱର ପୃଥିବୀ ସୃଜନ କରି ଅଛନ୍ତି ।

(୩) ଯେ ରକ୍ଷା କରିବେ ସେ ଭକ୍ଷଣ କଲେ ଆଉ ନିସ୍ତାର ନାହିଁ ।

(୪) ପଣ୍ଡାମାନେ ଜଗନ୍ନାଥଙ୍କ ସେବା କରନ୍ତି ।

(୫) ଯେ ନୃତ୍ୟ କରେ ତାହାର ଲଜ୍ଜା କାହିଁ ?

(୬) ଏଦେଶର ଗୋପାଳମାନେ ଶିବିକା ବହନ କରନ୍ତି ।

(୭) ବଙ୍ଗଦେଶରେ ଅଧିକାଂଶ ବ୍ରାହ୍ମଣ ଶକ୍ତିର ଉପାସନା କରନ୍ତି ।

(୮) ରାଜା ନିବେଦନ କରିବା ବ୍ୟକ୍ତିର ପ୍ରାର୍ଥନା ଶୁଣିଲେ ।

(୯) ଯନ୍ତ୍ର ଚଳାଇବା ବ୍ୟକ୍ତି ସେଠାରେ ନ ଥିବାରୁ ସେହି ଅପଦ ଘଟିଲା ।

(୧୦) ଦୂତର ଦୋଷ ନ ଥିବ, ସେହି ଦୂତକୁ ଯେ ପଠାଇ ଅଛନ୍ତି ତାହାଙ୍କର ଦୋଷ ଦେଖିବାର ଉଚିତ ।

୬ । [କ] ସେ ଏହୁ କର୍ମ କରି ଅଛନ୍ତି ।

[ଖ] ସେ ଏହୁ କର୍ମର କର୍ତ୍ତା ଅଟନ୍ତି ।

ଏଠାରେ କୃତ୍‌ପ୍ରତ୍ୟୟ ଦ୍ୱାରା [କ] ଚିହ୍ନିତ ବାକ୍ୟ ରୂପା-ନ୍ତରିତ ହୋଇ [ଖ] ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

(୧) ବିଦ୍ୟା ଯେ ଦାନ କରନ୍ତି ତାହାଙ୍କର ବିଦ୍ୟା ବୃଦ୍ଧି ହୁଏ; ଯେ ଗ୍ରହଣ କରନ୍ତି ତାହାଙ୍କର ବୃଦ୍ଧି ହୁଏ ।

(୨) ପରାଶର ମନ୍ତ୍ର ଏବଂ ସ୍ମୃତି ବିଧାନ କରି ଅଛନ୍ତି ।

(୩) ଇଂରେଜମାନେ ଭାରତବର୍ଷ ଜୟ କରି ଅଛନ୍ତି ।

(୪) ଯେମାନେ ଯନ୍ତ୍ର ନିର୍ମାଣ କରନ୍ତି, ସେମାନେ ଉତ୍କୃଷ୍ଟ ଶିଳ୍ପକାରକ ।

(୫) ସେ ଧର୍ମ ବିଷୟରେ ଉପଦେଶ ଦିଅନ୍ତି ।

(୬) ଅଲେକ୍‌ଜାଣ୍ଡର ଅଲେକ୍‌ଜାଣ୍ଡ୍ରିଆ ନଗରୀ ସ୍ଥାପନ କରି ଥିଲେ ।

(୭) ପରଶୁରାମ କ୍ଷତ୍ରିୟମାନଙ୍କୁ ହନନ କରୁଥିଲେ ।

(୮) ସେ ଅନ୍ୟ ପ୍ରତି ଦ୍ୱେଷ କରନ୍ତି ।

(୯) ଯେ ମାଂସ ଭୋଜନ କରେ ତାହାର କ୍ଷଣିକ ସୁଖ ମାତ୍ର, ଯାହାର ମାଂସ ତାହାର ପ୍ରାଣଗଲା ।

(୧୦) ସେହି ପୁସ୍ତକ ଯେ ରଚନା କରି ଅଛନ୍ତି ସେ ନଜାଣି କେଉଁ ଲୋକ ।

୭ । (କ) ଏପୁସ୍ତକ ଦୁଃଖକୁ ହରଣ କରେ ।

(ଖ) ଏ ପୁସ୍ତକ ଦୁଃଖ ହରଣ ଅଟେ ।

କୃତ୍‌ପ୍ରତ୍ୟୟ ଦ୍ୱାରା (କ) ଚିହ୍ନିତ ବାକ୍ୟ ରୂପାନ୍ତରିତ ହୋଇ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

(୧) ସେ ଅମ୍ବର ହୃଦୟକୁ ଅନନ୍ଦିତ କରନ୍ତି ।
(୨) ବିଷ୍ଣୁ ଦାନବମାନଙ୍କୁ ଦଳନ୍ତି ।
(୩) କୃଷ୍ଣ ଦ୍ରୌପଦୀଙ୍କର ଲଜ୍ଜା ନିବାରି ଅଛନ୍ତି ।
(୪) ଗରୁଡ଼ ନାରାୟଣଙ୍କୁ ବହନ୍ତି ।
(୫) ପରଶୁରାମ କ୍ଷତ୍ରିୟମାନଙ୍କୁ ଦମନ କରିଥିଲେ ।
(୬) ପ୍ରଭୁ ଜନପଦରୁ ଯାଉନ୍ତି ।
(୭) କେଶବ କଂସର ଗର୍ବ ଭାଙ୍ଗି ଥିଲେ ।
(୮) କୃଷ୍ଣ ସୁଦାମାର ଦାରିଦ୍ର୍ୟ ଭଞ୍ଜନ କରି ଅଛନ୍ତି ।
(୯) ଯୁଧିଷ୍ଠିର ଶିଷ୍ଟଙ୍କୁ ପାଳନ କରୁଥିଲେ ।

୮ । [କ] ବଶିଷ୍ଠ ଧର୍ମ୍ମତତ୍ତ୍ୱ ଜାଣିଥିଲେ ।
(ଖ) ବଶିଷ୍ଠ ଧର୍ମ୍ମତତ୍ତ୍ୱଜ୍ଞ ଥିଲେ ।

ଏହି ଆଦର୍ଶର ଅନୁକରଣରେ କୃତ୍ପ୍ରତ୍ୟୟ ପ୍ରୟୋଗଦ୍ୱାରା ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ରୂପାନ୍ତରିତ କର ।

(୧) ବିଜୟ ନଗରର ରାଜା ଇଂରେଜମାନଙ୍କୁ କର ଦିଅନ୍ତି ।
(୨) ସେମାନେ ବନରେ ବିଚରଣ କରନ୍ତି ।
(୩) ପକ୍ଷିମାନେ ଆକାଶରେ ବିଚରଣ କରନ୍ତି ।
(୪) ବଚ କଫକୁ ହରଣ କରେ ।
(୫) ସେ ନ୍ୟାୟ ଶାସ୍ତ୍ରର ପାରକୁ ଗମନ କରି ଥିଲେ ।
(୬) ଗୁଡ଼ ରୋଗକୁ ହରେ ।
(୭) ସେ ବାର୍ତ୍ତା ବହନ କରନ୍ତି ।
(୮) ବିଷ୍ଣୁ ଚକ୍ରକୁ ଧାରଣ କରନ୍ତି ।
(୯) ରାଜା ମାନ ଦିଅନ୍ତି ।
(୧୦) ଘୃତ ବଳ କରାଏ ।
(୧୧) ଚନ୍ଦ୍ର ଅତ୍ୟନ୍ତ ଶୋଭା କରୁ ଅଛନ୍ତି ।
(୧୨) ଖର ଆଶୁ ଗମନ କରେ ।
(୧୩) ପ୍ରଭୁ ମୋକ୍ଷଦାନ କରନ୍ତି ।

(୧୪) ଅହିଫେନ ନିଦ୍ରା ଜନ୍ମାଏ ।

(୧୫) ସେ ବୈଦ୍ୟଶାସ୍ତ୍ର ଜାଣନ୍ତି ।

(୧୬) ପଦ୍ମ ମନକୁ ହରଣ କରେ ।

(୧୭) ସେମାନେ ବଙ୍ଗଦେଶରେ ଥାଆନ୍ତି ।

(୧୮) ଆମ୍ଭେମାନେ ସ୍ଥଳରେ ଥାଉଁ ।

(୧୯) ରାବଣଙ୍କୁ ରଥରେ ଥିବାର ଦେଖି ଇନ୍ଦ୍ର ରାମଚନ୍ଦ୍ରଙ୍କ ନିମନ୍ତେ ରଥ ପଠାଇଲେ ।

(୨୦) ଯବନମାନେ ମଦ୍ୟପାନ କରନ୍ତି ।

(୨୧) ସେହି ଶିକ୍ଷା ଅବଶ୍ୟ ଫଳ ପ୍ରଦାନ କରିବ ।

(୨୨) ସୁବର୍ଣ୍ଣ ଖଣିରୁ ଜନ୍ମେ ।

(୨୩) ସ୍ଥଳରେ ଜାତ ପୁଷ୍ପ ଅପେକ୍ଷା ଜଳଜାତ ପୁଷ୍ପ ଅଧିକ ସୁନ୍ଦର ଅଟେ ।

(୨୪) ବଳରାମ କୃଷ୍ଣଙ୍କ ଅଗ୍ରେ ଜାତ ହୋଇ ଥିଲେ ।

(୨୫) ପକ୍ଷିମାନେ ଅଣ୍ଡରୁ ଜନ୍ମନ୍ତି ।

(୨୬) ମହାରାଜା ଦଶରଥ ଅରିମାନଙ୍କୁ ଦମନ କରୁଥିଲେ ।

(୨୭) କଚ୍ଛପ ଜଳ ଅଉ ସ୍ଥଳ ଉଭୟରେ ବିଚରଣ କରେ ।

(୨୮) ଭ୍ରମରମାନେ ମଧୁପାନ କରନ୍ତି ।

(୨୯) ଅଗ୍ନେୟ ବସ୍ତୁକୁ ତେଜ କରାଏ ।

(୩୦) ସୂର୍ଯ୍ୟ ଦିନ କରନ୍ତି ।

(କ) ଦେବତାମାନେ ଗଗନରେ ବିହାର କରନ୍ତି ।

(ଖ) ଦେବତାମାନେ ଗଗନ ବିହାର ଅଟନ୍ତି ।

ଏହି ଆଦର୍ଶର ଅନୁକରଣରେ କୃତ୍ ପ୍ରତ୍ୟୟ ପ୍ରୟୋଗ ଦ୍ୱାରା ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ରୂପାନ୍ତରିତ କର ।

(୧) ଏ ସ୍ତମ୍ଭ ବହୁକାଳ ଥିବ ।

(୨) ବିଷ୍ଣୁ ଅନନ୍ତ ଉପରେ ଶୟନ କରନ୍ତି ।

(୩) ନିଦ୍ରା ବିରାମ ପ୍ରଦାନ କରେ ।

(୪) ମହାନଦୀ ପୂର୍ବ ଦଗକୁ ବହୁ ଯାଉଅଛୁ ।

(୫) ପ୍ରଭୁ ଦର୍ପ ହରଣ କରନ୍ତୁ ।

(୬) ଯେ ଲୋକ ଗୁଣ ଗ୍ରହଣ କରନ୍ତୁ ସେ ଗୁଣିମାନଙ୍କଠ ଅଣିଥି ଅଟନ୍ତୁ ।

(୭) କୁମାର୍ଗରେ ଗମନ ନ କର ।

(୮) ସବୁ ସ୍ଥଳରେ ସ୍ପଷ୍ଟ ବୋଲିବାର ଉଚିତ ନୁହେ ।

(୯) ଏ ସମ୍ବାଦ ତାହାଙ୍କର ହୃଦୟ ଭେଦ କରିବ ।

(୧୦) ଜଳୌକା ରକ୍ତ ଶୋଷଣ କରେ ।

(୧୧) ନୀଳଗିରି ବାଲେଶ୍ୱର ନିକଟରେ ସ୍ଥିତ ଅଟେ ।

(୧୨) ହରିଣ ତୃଣ ଭୋଜନ କରେ ।

(୧୩) ସେହି ସାଧୁ ବୃନ୍ଦାବନରେ ବାସ କରନ୍ତି ।

(୧୪) ହିମାଳୟ ଶୃଙ୍ଗମାନେ ଗଗନକୁ ସ୍ପର୍ଶ କରୁ ଅଛନ୍ତି ।

(୧୫) ସେ ଯାହା ଆଜ୍ଞା କରନ୍ତି, ଅମ୍ଭେ ତାହା କରୁଁ ।

୧୦ । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ କୃତ୍ ପ୍ରତ୍ୟୟ ପ୍ରୟୋଗ ଦ୍ୱାରା ରୂପାନ୍ତରିତ କର ।

(୧) ତାହାଙ୍କର ନେବାର ଇଚ୍ଛା ଥିଲା ।

(୨) ବ୍ୟାଘ୍ର ହିଂସା କରେ ।

(୩) ଅର୍ଜୁନଙ୍କର ଜିଗୀଷା ଥିଲା ।

(୪) ଶରୀର କ୍ଷଣିକେ ଭଗ୍ନ ହୋଇ ପାରେ ।

(୫) ବ୍ରାହ୍ମଣମାନେ ଭିକ୍ଷା କରନ୍ତି ।

(୬) ସେ ବଜ୍ର ସହି ପାରନ୍ତି ।

(୭) ପଣ୍ଡାମାନେ ଅର୍ଥ ଗ୍ରହଣ କରିବାରେ ସର୍ବଦା ରତ ।

(୮) ବୃତ୍ରାସୁର ବନ୍ଧ ଜୟ କରିଥିଲେ ।

(୯) ଭୂମି ସମ୍ପତ୍ତି ଚିରକାଳ ଥିବ ।

(୧୦) ଜୀବନ ନଷ୍ଟ ହୋଇ ଯାଏ ।

(୧୧) ଅଗ୍ନି ସବୁ ଭୋଜନ କରନ୍ତି ।

(୧୨) ମନୁଷ୍ୟ ସ୍ୱକର୍ମର ଫଳ ଭୋଗ କରେ ।

(୧୩) ତାହାଙ୍କ ପରି ଲୋକ ଅତି ବିରଳ ।

(୧୪) ଆମ୍ଭ ପରି ଲୋକର ଏହା ଅସାଧ୍ୟ ।

(୧୫) ସେହି ଶ୍ରେଣୀରେ ଯେଉଁ ପୁସ୍ତକ ପାଠ ହେଉଅଛି ତାହା ଆମ୍ଭକୁ ଦେଖାଅ ।



୨ ୟ ଅଧ୍ୟାୟ—୨ ୟ ପାଠ ।

୧ । (କ) ତାହାଙ୍କର ଜୟ କରିବାକୁ ଇଚ୍ଛା ଅଛି ।

(ଖ) ତାହାଙ୍କର ଜିଗୀଷା ଅଛି ।

ସନନ୍ତ ଧାତୁର ଉତ୍ତର କୃତ୍ପ୍ରତ୍ୟୟ ପ୍ରୟୋଗ ଦ୍ୱାରା (କ) ଚିହ୍ନିତ ବାକ୍ୟ ସଂକ୍ଷିପ୍ତ ହୋଇ ଯେମନ୍ତ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା, ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

(୧) ଦୁର୍ବାସାଙ୍କର ଭୋଜନ କରିବାର ଇଚ୍ଛା ହୋଇଥିଲା ।

(୨) ଧନ ଲଭିବାର ଇଚ୍ଛା ସମସ୍ତଙ୍କର ଅଛି ।

(୩) ତାହାଙ୍କର ଭେଳା ଦ୍ୱାରା ସାଗର ତରିବାର ଇଚ୍ଛା ହୋଇ ଅଛି ।

(୪) ଲୋକେ ମୃତ୍ୟୁର ଯେତେ ନିକଟବର୍ତ୍ତୀ ହୋଇ ଥାଆନ୍ତି ବଞ୍ଚିବାର ଇଚ୍ଛା ତେତେ ପ୍ରବଳ ହୋଇଥାଏ ।

(୫) ସହସ୍ର କଷ୍ଟ ହେଲେ ସୁଦ୍ଧା ମରିବାକୁ ଇଚ୍ଛା ହୁଏ ନାହିଁ ।

(୬) ଉପକାର କରିବାର ଇଚ୍ଛା ସାଧୁମାନଙ୍କ ସ୍ୱାଭାବ ସିଦ୍ଧ ଅଟେ ।

(୭) ପରଧନ ହରଣେଚ୍ଛା ଅତି ଗର୍ହିତ ଅଟେ ।

(୮) ଭୁକ୍ଷୁ ଜୀବକୁ ଦେଖିଲେ ହନନ ଇଚ୍ଛା ସ୍ୱଭାବତଃ ଜାତ ହୁଏ ।

(୯) ଗ୍ରୀଷ୍ମକାଳରେ ପାନ କରିବାର ଇଚ୍ଛା ପ୍ରବଳ ହୁଏ ।

(୧୦) ମାଧବର ଗମନ କରିବାକୁ ଇଚ୍ଛା ଅଛି ।

୨ । (କ) ସେ ଝୁଲୁଥିଲେ ।

(ଖ) ସେ ଦୋଳାୟମାନ ହେଉଥିଲେ ।

ଏହି ଆଦର୍ଶ ଅନୁକରଣରେ ନାମ ଧାତୁରେ କୃତ୍‌ପ୍ରତ୍ୟୟ ପ୍ରୟୋଗ ଦ୍ୱାରା ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ରୂପାନ୍ତରିତ କର ।

(୧) ସେ ଛୁଡ଼ା ହୋଇ ଥିଲେ ।

(୨ ତାହାଙ୍କର ଅମୃତ ପ୍ରାୟ ବାକ୍ୟଶ୍ରେଣି କର୍ଣ୍ଣ ପରିତୃପ୍ତ ହେଲା ।

(୩) ଫେନ ଉଦ୍‌ଗମନ କରୁଥିଲା ଯେ ସାଗର, ତାହାକୁ ଦେଖି କୃଷ୍ଣ ଆନନ୍ଦିତ ହେଲେ ।

(୪) ରାଧାଚନ୍ଦ୍ର ଆକାଶରେ ଘୂରୁଥିଲା ।

(୫) ଆକାଶ ଶବ୍ଦ କଲା ।

୩ । (କ) ଅପତ୍ତି ଉଠିଲା ।

(ଖ) ଅପତ୍ତି ଉତ୍ଥାପିତ ହେଲା ।

ଏହି ଆଦର୍ଶର ଅନୁକରଣରେ ନିମ୍ନଲିଖିତ ବାକ୍ୟମାନଙ୍କର କ୍ରିୟା ଗୁଡ଼ିକୁ ଣିଜନ୍ତ କରି ଲେଖ ।

(୧) ସେ କଥା ଜଣାଗଲା ।

(୨) ଗଙ୍ଗାତୀରରେ ମନ୍ଦିର ଅବସ୍ଥିତ ।

(୩) ସମସ୍ୟା ପୂରିବ ।

(୪) ପୁସ୍ତକ ଅର୍ପିତ ହେଲା ।

(୫) ବାକ୍ୟ ପଠିତ ହେଲା ।

(୬) ପତ୍ରିକା ଦୃଷ୍ଟ ହେଲା ।

(୭) ବୃକ୍ଷର ଶାଖା ନତ ହେଲା ।

(୮) ବନ ଗଲା ।

(୯) ଯନ୍ତ୍ର ଚଳିଲା ।

(୧୦) ଶାଳବୃକ୍ଷରୁ ରସ ନିଃସୃତ ହେଲା ।

## ୨ୟ ଅଧ୍ୟାୟ—କୃତ୍ ସାଧନ ।

୧ । (କ) ଦଶରଥଙ୍କର-ପୁତ୍ର କଙ୍କଷାର ପୁତ୍ରଙ୍କୁ ସଂହାର କଲେ ।
(ଖ) ଦାଶରଥି ନୈକଷେୟଙ୍କୁ ସଂହାର କଲେ ।

ଅପତ୍ୟ ଅର୍ଥରେ ତଦ୍ଧିତ ପ୍ରତ୍ୟୟ ଦ୍ୱାରା (କ) ଚିହ୍ନିତ ବାକ୍ୟ ରୂପାନ୍ତରିତ ଓ ସଂକ୍ଷିପ୍ତ ହୋଇ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

( ୧ ) ଗଙ୍ଗାଙ୍କ ପୁତ୍ର କୁନ୍ତୀଙ୍କ ପୁତ୍ରସଙ୍ଗେ ଯୁଦ୍ଧ କଲେ ।

( ୨ ) ଜମଦଗ୍ନିଙ୍କର ପୁତ୍ର ଭରଦ୍ୱାଜଙ୍କ ପୁତ୍ରଙ୍କୁ ଧନୁର୍ବେଦ ଶିଖାଇ ଥିଲେ ।

( ୩ ) ଅଭିମନ୍ୟୁ ବସୁଦେବ ପୁତ୍ରଙ୍କର ଭଗିନୀର ପୁତ୍ର ଥିଲେ ।

( ୪ ) ଭାରତଯୁଦ୍ଧ ଧୃତରାଷ୍ଟ୍ରଙ୍କର ପୁତ୍ର ଓ ପାଣ୍ଡବଙ୍କର ପୁତ୍ର ଏ ଉଭୟଙ୍କ ମଧ୍ୟରେ ହୋଇ ଥିଲା ।

( ୫ ) ମହାରାଜ ପରୀକ୍ଷିତ୍ ବିରାଟରାଜାଙ୍କର ଦୁହିତାର ପୁତ୍ର ଏବଂ ଅର୍ଜ୍ଜୁନଙ୍କର ପୁତ୍ରର ପୁତ୍ର ଥିଲେ ।

( ୬ ) ଯଦୁବଂଶସମ୍ଭୂତ ଲୋକମାନେ ପ୍ରଭାସ ତୀର୍ଥରେ ପ୍ରାଣ-ତ୍ୟାଗ କଲେ ।

( ୭ ) ବିକର୍ତ୍ତନଙ୍କର ପୁତ୍ର କୁରୁବଂଶସମ୍ଭୂତ ବ୍ୟକ୍ତିମାନଙ୍କର ପ୍ରଧାନ ମିତ୍ର ଥିଲେ ।

( ୮ ) ରୋହିଣୀଙ୍କର ପୁତ୍ର କୁରୁମାନଙ୍କ ଯୁଦ୍ଧରେ କୌଣସି ପକ୍ଷ ଅବଲମ୍ବନ କରି ନାହାନ୍ତି ।

( ୯ ) ଦ୍ରୁପଦକନ୍ୟାର ସ୍ୱୟମ୍ବର ଦ୍ୱୀପରେ ଜାତ ହୋଇ ଥିବା ମୁନିଙ୍କର ପରାମର୍ଶ ଅନୁସାରେ ହୋଇ ଥିଲା ।

( ୧୦ ) ସୁମିତ୍ରାଙ୍କ ପୁତ୍ର ରାବଣଙ୍କ ପୁତ୍ରଙ୍କୁ ସଂହାର କଲେ ।

( ୧୧ ) ଚନ୍ଦ୍ରଙ୍କର ତନୟ ଦଶରଥ ପୁତ୍ରଙ୍କର କାର୍ଯ୍ୟ ପଣ୍ଡ କରିବା ନିମନ୍ତେ ଜନକଙ୍କର କନ୍ୟାକୁ ଅପହରଣ କଲେ ।

(୧୨) ଦ୍ରୋଣପୁତ୍ର ପିତୃବଧର ପ୍ରତିଶୋଧ ନିମନ୍ତେ ଦ୍ରୁପଦ ପୁତ୍ରଙ୍କୁ ସଂହାର କଲେ ।

(୧୩) ପଞ୍ଚକନ୍ୟା ମଦନଙ୍କୁ ସଙ୍ଗେ ଘେନି ଶିବଙ୍କର ଧ୍ୟାନ ଭଙ୍ଗ ନିମନ୍ତେ ହିମାଳୟକୁ ଗଲେ ।

(୧୪) ଦକ୍ଷ କନ୍ୟା ପତିନିନ୍ଦା ଶୁଣି ତନୁତ୍ୟାଗ କଲେ ।

(୧୫) କୃଷ୍ଣନ୍ତ ପୂରୁବଂଶରୁ ଜାତ ହୋଇଥିଲେ ।

(୧୬) ବସୁଦେବାଙ୍କର ପୁତ୍ର ବଦେବକନ୍ୟାଙ୍କୁ ହରଣେକଲେ ।

(୧୭) ମେନକାଙ୍କର ପୁତ୍ର ବରୁଣଙ୍କ ଅଶ୍ରୟ ନେବାରୁ ଇନ୍ଦ୍ରଙ୍କ ହସ୍ତରୁ ରକ୍ଷା ପାଇଲେ ।

(୧୮) ଭୀମକନ୍ୟା ନଳଙ୍କୁ ବରଣ କଲେ ।

(୧୯) ବସ୍ତ୍ରରନ ପୁତ୍ରଙ୍କୁ ପ୍ରହ୍ଲାଦ ଅନେକ ସଦୁପଦେଶ ଦେଲେ ।

(୨୦) ପବନଙ୍କର ପୁତ୍ର ରାମଙ୍କର ପରମ ଭକ୍ତ ଥିଲେ ।

(୨ ) ଏକର୍ଥ ମନୁର ପୁତ୍ରଙ୍କର ସାଧ୍ୟ ନୁହେ ।

(୨୨) ପରାଶର ପୁତ୍ର ଅନେକ ଗ୍ରନ୍ଥ ରଚି ଥିଲେ ।

(୨୩) ଭୃଗୁତନୟ ପୃଥିବୀ ନିଃକ୍ଷତ୍ରିୟା କରିଥିଲେ ।

(୨୪) ସୁଭଦ୍ରାଙ୍କ ପୁତ୍ର ଅନ୍ୟାୟ ଯୁଦ୍ଧରେ ହତ ହେଲେ ।

(୨୫) ବିନତାଙ୍କ ପୁତ୍ର ଅମୃତ ହରଣ କରିଥିଲେ ।

୨ । (କ) ସେ ତର୍କ ଅଧ୍ୟୟନ କରନ୍ତି ।

(ଖ) ସେ ତାର୍କିକ ଅଟନ୍ତି ।

ଇକ ପ୍ରତ୍ୟୟ ପ୍ରୟୋଗରେ (କ) ଚିହ୍ନିତ ବାକ୍ୟ ସଂକ୍ଷିପ୍ତ ହୋଇ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

(୧) ଶରୀରର ପରିଶ୍ରମ ଅପେକ୍ଷା ମନର ପରିଶ୍ରମର ମୂଲ୍ୟ ଅଧିକ ।

(୨) ଏ ଅମୃତ କୁଳର ପ୍ରଥା ।

(୩) ଈଶ୍ୱରଙ୍କର ନିଷ୍ପମର ଅନ୍ୟଥା କଦାଚ ହୋଇ ନ ପାରେ ।

(୪) ସେ ବଦେଶରୁ ଅଗତ ହୋଇ ଥିଲେ ।

(୫) ଏହି ସମ୍ପତ୍ତି ପିତାଠାରୁ ପ୍ରାପ୍ତ ।

(୬) ଅମ୍ଭମାନଙ୍କର ପ୍ରତି ସପ୍ତାହରେ ପରୀକ୍ଷା ହୁଏ ।

(୭) ପୃଥିବୀର ଦକ୍ଷିଣରେ ଏବଂ ବିର୍ଷରେ ଦୁଇ ପ୍ରକାର ଗତି ଅଛି ।

(୮) ଭିନ୍ନମାସର ଅୟବ୍ୟୟ ହିସାବ ପାଇବାକୁ ହେବ ।

(୯) ସେ ଅଳଂକାର ଅଧ୍ୟୟନ କରନ୍ତି ।

(୧୦) ଇହକାଳର ସୁଖରେ ତାହାଙ୍କର ସ୍ପୃହା ନାହିଁ ।

(୧୧) ଯବନମାନଙ୍କର ପରିଚ୍ଛଦ ଅମ୍ଭମାନଙ୍କର ଉପଯୋଗୀ ନୁହେ ।

(୧୨) ଏହାର ଉତ୍ତର ମୁଖରେ ଦେବାକୁ ହେବ ।

(୧୩) ଏ ବିଷୟର ପ୍ରମାଣ ପୁରାଣରେ ମିଳିବ ।

(୧୪) ଏହାକୁ ଉଠାଇବା ନିମନ୍ତେ ଯନ୍ତ୍ରର ବଳ ପ୍ରୟୋଜନ ହେବ ।

(୧୫) ଏହି ବ୍ରାହ୍ମଣ ବେଦ ଅଧ୍ୟୟନ କରନ୍ତି ।

(୧୬) ଅସୁରଙ୍କର ମାୟା ଅସୁରମାନେ ବୁଝି ପାରନ୍ତି ।

(୧୭) ଲୋକମାନଙ୍କର ପ୍ରଥାର ବିରୋଧୀ ହେଲେ ସମସ୍ତ ଅସିଦ୍ଧ ହୁଅନ୍ତି ।

(୧୮) ଅୟତ କ୍ଷେତ୍ର ସରଳରେଖା ଦ୍ୱାରା ବେଷ୍ଟିତ ଅଟେ ।

(୧୯) ସେହି ପତ୍ରିକା ପ୍ରତି ପକ୍ଷରେ ଥରେ ଲେଖାଏଁ ବାହାରେ ।

(୨୦) ସେ ଯୋଗୀ ତନ୍ତ୍ର ଅଧ୍ୟୟନ କରୁଥିଲେ ।

(୨୧) ନ୍ୟାୟରେ ତାହାଙ୍କର ବ୍ୟୁତ୍ପତ୍ତି ଅଛି ।

(୨୨) ଜୟ ବିଜୟ ବୈକୁଣ୍ଠର ଦ୍ୱାରରକ୍ଷା କରୁଥିଲେ ।

(୨୩) ତାହାଙ୍କର ଅନ୍ତରର ଭାବ ସେପରି ନୁହେ ।

(୧୪) ମୈଥିଲ ପଣ୍ଡିତମାନେ ଦର୍ଶନ ଶାସ୍ତ୍ରର ଆଲୋଚନା କରନ୍ତି ।

(୧୫) ଭାରତବର୍ଷର ବଙ୍ଗାଳା ସମ୍ବନ୍ଧୀୟ ଉନ୍ନତ ଅତ୍ୟନ୍ତ ବ - ର୍ଦ୍ଧନୀୟ ଅଟେ ।

୩ । (କ) ରାବଣ ଶିବଭକ୍ତ ଥିଲେ ।

(ଖ) ରାବଣ ଶୈବ ଥିଲେ ।

ତଦ୍ଧିତ ପ୍ରତ୍ୟୟ ଦ୍ୱାରା (କ) ଚିହ୍ନିତ ବାକ୍ୟ ସଂକ୍ଷିପ୍ତ ହୋଇ ଯେମନ୍ତ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା , ନିମ୍ନଲିଖିତ ବାକ୍ୟମାନଙ୍କୁ ସେହିରୂପେ ପରିଣତ କର ।

(୧) ତୈଲଙ୍ଗୀୟମାନେ ଗଣପତିଙ୍କର ଭକ୍ତ ଅଟନ୍ତି ।

(୨) ଶିଖିଧ୍ୱଜ ବିଷ୍ଣୁଙ୍କର ପରମ ଭକ୍ତ ଥିଲେ ।

(୩) ପୃଥୁକ୍ତା ଭଗବାନର ପରମ ଭକ୍ତ ଥିଲେ ।

(୪) ମହାରାଜା କୃଷ୍ଣଚନ୍ଦ୍ର ଶକ୍ତି ଉପାସକ ଥିଲେ ।

(୫) ଅଗ୍ନିବର୍ଣ୍ଣ ଅତ୍ୟନ୍ତ ସ୍ତ୍ରୀ ଭକ୍ତ ଥିଲେ ।

(୬) ଲଙ୍କେଶ୍ୱର ମହେଶ୍ୱରଙ୍କର ପରମ ଭକ୍ତ ଥିଲେ ।

୪ । (କ) ଏହା କରାଇବାର ମାନବମାନଙ୍କ ଶକ୍ତିର ଅସାଧ୍ୟ ଅଟେ ।

(ଖ) ଏହା କରାଇବାର ମାନବୀୟ ଶକ୍ତିର ଅସାଧ୍ୟ ଅଟେ ।

ଈୟ ପ୍ରତ୍ୟୟ ଦ୍ୱାରା (କ) ଚିହ୍ନିତ ବାକ୍ୟ ସଂକ୍ଷିପ୍ତ ହୋଇ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

(୧) ଦେଶର ଲୋକଙ୍କର ମତ କେହି ଗ୍ରହଣ କରନ୍ତି ନାହିଁ ।

(୨) ପର୍ବତ ସମ୍ବନ୍ଧୀୟ ଦେଶରେ ଅଧିକ ବୃଷ୍ଟି ପଡ଼େ ।

(୩) ଏ କାଳରେ ବାଷ୍ପ ସମ୍ବନ୍ଧୀୟ ଘଟଣା ଅନେକ ଥର ଘଟି ଅଛି ।

(୪) ଇଉରୋପର ଲୋକମାନେ ସବୁ ବିଷୟରେ ଅଗ୍ରଗଣ୍ୟ ଅଟନ୍ତି ।

(୫) ଆରବର ଅଶ୍ୱ ଅତ୍ୟନ୍ତ ବଳବାନ୍ ।

(୬) ମହାରାଷ୍ଟ୍ରର ଲୋକମାନେ ଆଧୁନିକ ହିନ୍ଦୁମାନଙ୍କର ଅଗ୍ରଗଣ୍ୟ ଅଟନ୍ତି ।

(୭) ପୃଥିବୀର ସମସ୍ତ ଦେଶରେ ଖ୍ରୀଷ୍ଟଙ୍କର ଧର୍ମ ପ୍ରଚାରିତ ହୋଇ ଅଛି ।

(୮) ରାଘବଙ୍କର ସେନା ଏବଂ ବାନରଙ୍କର ସେନା ଉଭୟେ ଏକତ୍ରିତ ହେଲେ ।

(୯) ସ୍ଥାନର ଶିକ୍ଷା ସମ୍ବନ୍ଧରେ ଏହାର ମୀମାଂସା ହେବ ।

(୧୦) ତାହାଙ୍କର ବଚନ ସ୍ୱର୍ଗର ସଙ୍ଗୀତ ପ୍ରାୟ ମଧୁର ।

୫ । (କ) ଗୁରୁଙ୍କୁ ପିତାଙ୍କର ତୁଲ୍ୟ ପୂଜା କରିବ ।

(ଖ) ଗୁରୁଙ୍କୁ ପିତୃବତ୍ ପୂଜା କରିବ ।

ବତ୍ ପ୍ରତ୍ୟୟ ଦ୍ୱାରା (କ) ଚହ୍ନିତ ବାକ୍ୟ ସଂକ୍ଷିପ୍ତ ହୋଇ ଯେମନ୍ତ (ଖ) ଚହ୍ନିତ ବାକ୍ୟରେ ପରିଣତ ହେଲା, ନିମ୍ନଲିଖିତ ବାକ୍ୟ ସମୂହକୁ ସେହିରୂପେ ପରିଣତ କର ।

(୧) ସହପାଠିମାନଙ୍କୁ ଭ୍ରାତାଙ୍କପରି ମଣିବ ।

(୨) ପର ପତ୍ନୀଙ୍କୁ ମାତାଙ୍କପରି ଜ୍ଞାନ କରିବ ।

(୩) ପିତାଙ୍କୁ ଦେବ ପ୍ରାୟ ଭକ୍ତି କରିବ ।

(୪) ପରର ଦ୍ରବ୍ୟକୁ ଲୋଷ୍ଟ୍ର ପ୍ରାୟ ମଣିବ ।

(୫) ଜ୍ୟେଷ୍ଠ ଭ୍ରାତାଙ୍କୁ ପିତୃପ୍ରାୟ ଜାଣିବ ।

(୬) ରାତ୍ରରେ ଦଧି ବିଷପରି ଅକଲ୍ୟାଣକର ହୁଏ ।

(୭) ବସୁନ୍ଧରା ଝଡ଼ରେ ରକ୍ତ ଜଳଦପରି ହୋଇ ଯାଏ ।

[୮] ପାପିଙ୍କ ପ୍ରତି ସଂସାର ନରକ ପ୍ରାୟ ହୁଏ ।

[୯] ଯାହାର ଜ୍ଞାନ ନାହିଁ ସେ ଅନ୍ଧ ପ୍ରାୟ ।

[୧୦] ତାହାଙ୍କର ଶରୀର କାଷ୍ଠପ୍ରାୟ ହୋଇ ଗଲା ।

୬ । [କ] ଯାହାର ଗୁଣଅଛି ତାହାର ସବୁଠାରେ ଆଦର ।

[ଖ] ଗୁଣବାନ ଲୋକର ସବୁଠାରେ ଆଦର ।

ଚିହ୍ନିତ ପ୍ରତ୍ୟୟ ଦ୍ୱାରା (କ) ଚିହ୍ନିତ ବାକ୍ୟ ଯେମନ୍ତ ସଂକ୍ଷିପ୍ତ ହେଲା, ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ସଂକ୍ଷିପ୍ତ କର।

(୧) ଯାହାର ବିଦ୍ୟା ଅଛି, ତାହାର ସ୍ୱଦେଶ ଯେମନ୍ତ ବିଦେଶ ମଧ୍ୟ ସେହିପରି ।

(୨) ଯାହାର ଧନ ଅଛି, ତାହାକୁ ସମସ୍ତେ ସ୍ତବ କରନ୍ତି ।

(୩) ତାହାଙ୍କର ଜ୍ଞାନ ଅଛି ।

(୪) ଯାହାର ବୁଦ୍ଧି ଅଛି ତାହାକୁ କେହି ପ୍ରତାରଣା କରିପାରେ ନାହିଁ ।

(୫) ସୂର୍ଯ୍ୟ ଅଂଶୁବିଶିଷ୍ଟ ଅଟନ୍ତି ।

(୬) ଏହି ଲତାର ଯେତେବେଳେ ପୁଷ୍ପ ହେବ, ସେତେବେଳେ ଏହା ଅତ୍ୟନ୍ତ ସୁନ୍ଦର ଦିଶିବ ।

(୭) ଯେଉଁ ବୃକ୍ଷର ଫଳ ହୋଇଥାଏ ତାହା ନମ୍ର ହୁଏ ।

(୮) ତାହାଙ୍କର ଅତ୍ୟନ୍ତ ଯଶ ହେଲା ।

(୯) ଯେଉଁ ଛାତ୍ରର ମେଧା ଅଛି ସେ ଅଚିରାତ୍ ଶିଖିପାରେ ।

[୧୦] ଏ ଗାଈର ଅନେକ ଦୁଗ୍ଧ ହୁଏ ।

[୧୧] ଦୁର୍ଯ୍ୟୋଧନଙ୍କର ଅତ୍ୟନ୍ତ ଅଭିମାନ ଥିଲା ।

[୧୨] କର୍ଣ୍ଣଙ୍କର ବଡ଼ ଅହଂକାର ଥିଲା ।

[୧୩] ଯାହାର ପାପ ଅଛି ତାହାର ସର୍ବଦା ଦୁଃଖ ।

[୧୪] ସେ ଚର୍ମ ବ୍ୟବସାୟ କରନ୍ତି ।

[୧୫] କୃଷ୍ଣଙ୍କର ଅତ୍ୟନ୍ତ ମାୟା ଥିଲା ।

[୧୬] ଭୀମଙ୍କର ଅତ୍ୟନ୍ତ ବଳ ଥିଲା ।

[୧୭] ଏବିଷୟରେ ତାହାଙ୍କର ଅପରାଧ ନାହିଁ ।

[୧୮] ଯାହାର ତୃଷ୍ଣା ଅଛି ତାହା ମନ ସବୁବେଳେ ବ୍ୟସ୍ତ ।

[୧୯] ଯେ ଲୋକର ସନ୍ତୋଷ ଅଛି ସେ କେବେ କଷ୍ଟ ନପାଏ

[୨୦] ଯେ ଲୋକ ଦୋଷ କରି ଥାଏ, ତାହା ଅଭିଭୂତ ତାହାକୁ ଦଣ୍ଡ ଦିଏ ।

୭ । [କ] ତାହାଙ୍କର ଅତ୍ୟନ୍ତ ଦୟା ।

[ଖ] ସେ ବଡ଼ ଦୟାଳୁ ।

ଉକ୍ତ ପ୍ରତ୍ୟୟ ଦ୍ୱାରା [କ] ଚିହ୍ନିତ ବାକ୍ୟ ସଂକ୍ଷିପ୍ତ ହୋଇ [ଖ] ଚିହ୍ନିତ ବାକ୍ୟରେ ପରିଣତ ହେଲା । ଯେଉଁ ସ୍ଥଳରେ ଯେମନ୍ତ ପ୍ରତ୍ୟୟ ହେବାର ଉଚିତ ତାହା ପ୍ରୟୋଗ କରି ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ସଂକ୍ଷିପ୍ତ କର ।

[୧] କୁମ୍ଭକର୍ଣ୍ଣ ନିଦ୍ରାପ୍ରତି ଅତ୍ୟନ୍ତ ଆଶକ୍ତ ଥିଲେ ।
[୨] ରାମଙ୍କ ପ୍ରତି ଲକ୍ଷ୍ମଣଙ୍କର ଅତି ଶ୍ରଦ୍ଧା ଥିଲା ।
[୩] ସେହି ହରିଣ ଦେହରେ ଅନେକ ମାଂସ ଅଛି ।
[୪] ପାରସିକ ସୈନ୍ୟମାନଙ୍କର ଶ୍ମଶ୍ରୁ ଥିଲା ।
[୫] ବୃଦ୍ଧମାନେ ଅଧିକ ବାକ୍ୟ କହନ୍ତି ।
[୬] ହିମାଳୟର ବାୟୁରେ ବଡ଼ ଶୀତ ହୁଏ ।
[୭] ମହୋଦଧିର ଲହରୀରେ ଅନେକ ଫେଣ ଥାଏ ।
[୮] ଶିବଙ୍କର ଜଟା ଅଛି ।
[୯] ଯେଉଁ ସରୋବରରେ ଅଧିକ ପଙ୍କ ଥାଏ, ସେଥିରେ ପଦ୍ମଫୁଲ ଫୁଟେ ।
[୧୦] ଅଧିକାଂଶ ଚତୁଷ୍ପଦ ଦେହରେ ଲୋମ ଅଛି ।
[୧୧] ସେହି ରୋଗୀକୁ ବାତ ବୃଦ୍ଧି ହୋଇଅଛି ।

୮ । ନିମ୍ନଲିଖିତ ବାକ୍ୟଗୁଡ଼ିକୁ ଉପଯୁକ୍ତ ତଦ୍ଧିତପ୍ରତ୍ୟୟଦ୍ୱାରା ରୂପାନ୍ତରିତ କର ।

[୧] ବଶିଷ୍ଠ ଗୃହପ୍ରକାର ମୂର୍ତ୍ତି ହେଲେ ।
[୨] ତାହାଙ୍କର ମସ୍ତକ ଶତଖଣ୍ଡ ହୋଇ ବଦୀର୍ଣ୍ଣ ହେଲା ।
[୩] ଏହାର ଅନ୍ୟପ୍ରକାର କଦାଚ ହେବ ନାହିଁ ।
[୪] ନୀଳଗିରି ଉଚ୍ଚ, ମେଘାସନ ଅଧିକ ଉଚ୍ଚ ।
[୫] ଦମୟନ୍ତୀଙ୍କର ଚରିତ୍ର ଶୁଦ୍ଧ ଥିଲା, ସୀତାଙ୍କ ଚରିତ୍ର ଅଧିକ ଶୁଦ୍ଧ ଥିଲା ।
[୬] କୈକେୟୀଙ୍କର ମନ କ୍ଷୁଦ୍ରଥିଲା, ମନ୍ଥରାଙ୍କ ମନ ଅଧିକ

କ୍ଷୁଦ୍ର ଥିଲା ।

[୭] ପର୍ବତ ମଧ୍ୟରେ ହିମାଳୟ ସବୁଠାରୁ ଉଚ୍ଚ ଅଟେ ।

[୮] ଏ ଅତି ଗୁରୁ ବିଷୟ ଅଟେ ।

(୯) କ୍ରମେ୨ ବାଳକଙ୍କର ଯୌବନର ଅବସ୍ଥା ହେଲା ।

(୧୦) ଜାମାତା ପୁତ୍ରତୁଲ୍ୟ ଅଟନ୍ତି ।

(୧୧) ଶାଶୁ ମାତୃତୁଲ୍ୟ ଅଟନ୍ତି ।

(୧୨) ଯାହା ପୂର୍ବରେ ଦେଖି ନାହିଁ ଏପରି ବସ୍ତୁ ଅଜ ଦେଖିବ ।

(୧୩) ମନୁଷ୍ୟ ଯାହା କେବେ ଶୁଣି ନାହିଁ, ଅଜ ତୁମ୍ଭେ ସେହି କଥା ଶୁଣିବ ।

(୧୪) ଲଙ୍କାପୁରୀ ସୁବର୍ଣ୍ଣରେ ରଚିତ ।

(୧୫) ମୃତ୍ତିକା ଗଠିତ କଳସରେ ଜଳ ଅଣ ।

(୧୬) ସୂର୍ଯ୍ୟଙ୍କର କିରଣ ପୂର୍ବରେ ମନ୍ଦ ନଥିଲା, ବର୍ତ୍ତମାନ ମନ୍ଦ ହେଲା ।

(୧୭) ଗଡ଼ର ପ୍ରାଚୀର ପୂର୍ବରେ ଦୃଢ଼ ନଥିଲା, ବର୍ତ୍ତମାନ ଦୃଢ଼ ହେଲା ।

(୧୮) ସ୍ୱର୍ଣ୍ଣ ପୂର୍ବରେ ତରଳ ନଥିଲା, ଅଗ୍ନି ସଂଯୋଗରୁ ବର୍ତ୍ତମାନ ତରଳ ହୋଇ ଅଛି ।

(୧୯) ଘର ପୁରୁଣା ହୋଇ ଯାଇଥିଲା, ଅଦ୍ୟଦିନ ହେଲା ତାହାକୁ ନୂତନ କରାଯାଇ ଅଛି ।

(୨୦) ଏହି ହାଣ୍ଡି ଘର୍ଷ ନଥିଲା, ଛଦିମାସ ହେଲା ତାହାକୁ ଘର୍ଷ କରାଯାଇ ଅଛି ।

(୨୧) ଦଶମୀଦିନ ପ୍ରତିମାକୁ ଜଳରେ ନିକ୍ଷେପ କରନ୍ତି ।

(୨୨) ଏହି ଗାଈକୁ ବଥାନକୁ ଦେବାର ଉଚିତ ।

(୨୩) ମୁଁ ଅନ୍ୟସ୍ଥାନକୁ ଯିବି ।

(୨୪) ଅମ୍ଭେ ତୁମ୍ଭେ ଏକସ୍ଥାନରେ ବସି ପାରିବୁଁ ନାହିଁ ।

(୨୫) ସବୁ ସମୟରେ କଳହ ଭଲ ନୁହେଁ ।

(୨୬) ସେ ଏକ ସମୟରେ ବ୍ରାହ୍ମଣୀ ଘରରେ ଗୋଟିଏ ହରିଣ ଦେଖିଲେ ।

(୨୭) ଯେତେଦିନ ସେ କଟକରେ ରହିବେ, ସେତେଦିନ ମୁଁ ତାହାଙ୍କ ସଙ୍ଗରେ ରହିବ ।

(୨୮) ସେ ସ୍ଥାନର ଉତ୍ପନ୍ନ ଦ୍ରବ୍ୟ ବିଦେଶକୁ ପ୍ରେରିତ ହୁଏ ।

(୨୯) ସାୟଂକାଳର ମଲ୍ଲିକାର ସୌରଭ ଚାରିଆଡ଼େ ବ୍ୟାପ୍ତ ହେଲା ।

(୩୦) ଏହି ବୃକ୍ଷର ଫଳ ଜନ୍ମିଅଛି ।

୯ । (କ) ସେ ଅତି ମହତ୍ ଥିଲେ ।

(ଖ) ତାହାଙ୍କର ବଡ଼ ମହିମା ଥିଲା ଅଥବା ତାହାଙ୍କର ବଡ଼ ମହତ୍ତ୍ୱ ଥିଲା ।

ନିମ୍ନଲିଖିତ ବାକ୍ୟଗୁଡ଼ିକୁ ଭାବ ଅର୍ଥରେ ତଦ୍ଧିତ ପ୍ରତ୍ୟୟ କରି ଉପରଲିଖିତ ମତେ ରୂପାନ୍ତରିତ କର ।

(୧) ଜରାସନ୍ଧ ମଗଧ ଦେଶର ଅଧିପତି ଥିଲେ ।

(୨) ତାହାଙ୍କର ଚିତ୍ତ ଲଘୁ, ଏହା ମୁଁ ଜାଣିଅଛି ।

(୩) ନୀଳନଦ କେତେଦୀର୍ଘ ଏତେଦିନେ ତାହା ନିରୂପିତ ହେଲା ।

(୪) ସେ ଯେମନ୍ତ ଚତୁର, କେହି ସେପରି ନୁହନ୍ତି ।

(୫) ପଦ୍ମପୁଷ୍ପ ଯେମନ୍ତ ମଧୁର, ଅନ୍ୟ କୌଣସି ପୁଷ୍ପ ସେପରି ନୁହେ ।

୧୦ । (କ) ସେ ବାଳିକା ସୁନ୍ଦରୀ ଅଟେ ।

(ଖ) ସେ ବାଳିକାର ସୌନ୍ଦର୍ଯ୍ୟ ଅଛି ।

(କ) ଚିହ୍ନିତ ବାକ୍ୟରେ ସୁନ୍ଦରୀ ଧର୍ମୀପଦ । ସେହି ଧର୍ମୀପଦ ପରିବର୍ତ୍ତରେ ଧର୍ମପଦ ବ୍ୟବହାର କରିବାରୁ ବାକ୍ୟ ରୂପାନ୍ତରିତ ହୋଇ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା ।

ନିମ୍ନଲିଖିତ ଧର୍ମୀପଦ ବିଶିଷ୍ଟ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

(୧) ସେ ମନୁଷ୍ୟ ଉତ୍ତମ ।

(୨) ତାହାଙ୍କର ମୂର୍ତ୍ତି ଅତି ମଧୁର ଅଟେ ।
(୩) ଯୁଧିଷ୍ଠିର ଅତ୍ୟନ୍ତ ଧାର୍ମିକ ଥିଲେ ।
(୪) ଏକଥା ଶୁଣି ସେ ବିଷଣ୍ଣ ହେଲେ ।
(୫) ବାୟୁ ସ୍ଥିତିସ୍ଥାପକ ।
(୬) ପ୍ରଦୀପ ଉଜ୍ଜ୍ୱଳ ଅଟେ ।
(୭) କୋକିଳର ସ୍ୱର ଅତି ମିଷ୍ଟ ଅଟେ ।
(୮) ମାଧବ ଅତ୍ୟନ୍ତ ସନ୍ତୁଷ୍ଟ ହେଲେ ।
(୯) ଚନ୍ଦ୍ର ଅତ୍ୟନ୍ତ ମନୋହର ।
(୧୦) ସେ ସାଧୁ ଏହା ସମସ୍ତେ ଜାଣନ୍ତି ।
(୧୧) ସରଳ ଲୋକକୁ ସମସ୍ତେ ସୁଖ ପାଆନ୍ତି ।
(୧୨) ପଣ୍ଡିତ ବ୍ୟକ୍ତିକୁ ସମସ୍ତେ ଆଦର କରନ୍ତି ।
(୧୩) ଗୁଣିକୁ ଗୁଣି ଚିହ୍ନିପାରେ ।
(୧୪) ସିଂହ ଅତ୍ୟନ୍ତ ବଳବାନ୍ ।
(୧୫) ତୁଷାର ଶୁକ୍ଳ ଅଟେ ।

୧୧ । ନିମ୍ନଲିଖିତ ଧର୍ମପଦବିଶିଷ୍ଟ ବାକ୍ୟଗୁଡ଼ିକୁ ଧର୍ମିପଦ ବିଶିଷ୍ଟ ବାକ୍ୟରେ ପରିଣତ କର ।

(୧) ତାହାଙ୍କର ବିଦ୍ୟାବତ୍ତା ସମସ୍ତେ ଜାଣନ୍ତି ।
(୨) ଜଳରେ ଶୀତଳତ୍ୱ ଅଛି ।
(୩) ଭୂମିର ଦୀର୍ଘତ୍ୱ ପ୍ରକାଶ ହେବ ।
(୪) ସୁବର୍ଣ୍ଣରେ ଔଜ୍ଜ୍ୱଲ୍ୟ ଅଛି ।
(୫) ହରିତାଳରେ ପୀତତ୍ୱ ଅଛି ।
(୬) ତାହାଙ୍କର ବାକ୍ୟର ଅସାରତା ସପ୍ରମାଣ ହେଲା ।
(୭) ସୂର୍ଯ୍ୟଙ୍କଠାରେ ତେଜସ୍ୱିତା ଅଛି ।

## ୨ୟ ଅଧ୍ୟାୟ — ୪ର୍ଥ ସାଧନା ।

୧ । ନିମ୍ନଲିଖିତ ବାକ୍ୟମାନଙ୍କର ଯେଉଁ ସ୍ଥାନରେ ସମାସ ହେବାର ଉଚିତ ତାହା କରି ଲେଖ ।

(୧) ସେ ନବଦୂର୍ବାଦଳପରି ଶ୍ୟାମ ଥିଲେ ।

(୨) ନଦୀର କୂଳରେ ନିର୍ମଳ ଜ୍ୟୋତ୍ସ୍ନା ପଡ଼ି ଥିଲା ।

(୩) ଗଙ୍ଗାଙ୍କର ପୁତ୍ର ଭୀଷ୍ମ, ବୀରମାନଙ୍କର ଚୂଡ଼ାମଣି ଥିଲେ ।

(୪) ହୁମାୟୁନ ଦିଲ୍ଲୀର ସିଂହାସନରୁ ଭ୍ରଷ୍ଟ ହୋଇ ପାରସ୍ୟ ସମ୍ରାଟଙ୍କର ଶରଣକୁ ଆଗତ ହେଲେ ।

(୫) ଏହି ବିଶାଳ ପୃଥିବୀଙ୍କର ଗର୍ଭରେ କେତେ ରତ୍ନ ଅଛି ।

(୬) ଏହି ବୃହତ୍ ପୁଷ୍କରିଣୀ ତାହାଙ୍କର ଗୋଟିଏ ମହତ୍ କୀର୍ତ୍ତି ଅଟେ ।

(୭) କାଳିଦାସ ମହାନ କବି ଥିଲେ ।

(୮) ମହାନ ରାଜା ଦୁଷ୍ମନ୍ତ କଣ୍ୱଙ୍କର କନ୍ୟା ଶକୁନ୍ତଳାଙ୍କର କରକୁ ପୀଡ଼ନ କଲେ ।

(୯) ରାମଙ୍କର ପତ୍ନୀ ସୀତା ବିଦେହ ରାଜାଙ୍କର କନ୍ୟା ଥିଲେ ।

(୧୦) ସେହି ଧନ ତାହାଙ୍କର ହସ୍ତକୁ ଗତ ହେଲା ।

(୧୧) ପାଣ୍ଡବମାନେ କୌରବଙ୍କର ସେନାଙ୍କର ପତି ଭୀଷ୍ମଙ୍କୁ ଦ୍ରୋଣଙ୍କୁ ଏବଂ କର୍ଣ୍ଣଙ୍କୁ ହତ କଲେ ।

(୧୨) ତାହାଙ୍କର ମୁଖକୁ ଅବଲୋକନ କରି ମୁଁ ଅତ୍ୟନ୍ତ ହର୍ଷକୁ ପ୍ରାପ୍ତ ହେଲି ।

(୧୩) ଜଳାଶୟରେ ପଦ୍ମ, କୁମୁଦ ଏବଂ କହ୍ଲାର ପ୍ରସ୍ଫୁଟିତ ହେଲା ।

(୧୪) ତାହାଙ୍କର ପ୍ରବଳ ପିପାସାର ଶାନ୍ତି ହେଲା ।

(୧୫) ବୀରମାନଙ୍କର ବୃନ୍ଦ ଧନୁ ଏବଂ ବାଣ ନେଇ ରଣର ସ୍ଥଳକୁ ଅଇଲେ ।

(୧୬) ସାଧୁମାନଙ୍କର ସଙ୍ଗ ଛାଡ଼ିବ ନାହିଁ ।

(୧୭) ଯେଉଁ ଭକ୍ତିରେ କାମ ନାହିଁ ତାହା ପ୍ରକୃତ ଭକ୍ତି ।

(୧୮) ତାହାଙ୍କର କୃଷାକଟି ଉଜ୍ଜ୍ୱଳା ମେଖଳାଦ୍ୱାରା ଭୂଷିତ ଥିଲା ।

୨ । (କ) ବିଷ୍ଣୁଙ୍କର ଗୃହରଜ ଅଛି ।

(ଖ) ବିଷ୍ଣୁ ଚତୁର୍ଭୁଜ ଅଟନ୍ତି ।

ବହୁବ୍ରୀହି ସମାସ ହେବାରୁ (କ) ଚିହ୍ନିତ ବାକ୍ୟ ସକ୍ଷିପ୍ତ ହୋଇ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେରୂପେ ପରିଣତ କର ।

(୧) ତାହାଙ୍କର ଧନ ନାହିଁ ।
(୨) ରାମଙ୍କର ଚରିତ୍ରରେ କଳଙ୍କ ନାହିଁ ।
(୩) ପୁଷ୍କରିଣୀର ଜଳ ଶୁଷ୍କ ହୋଇ ଯାଇଅଛି ।
(୪) ତାହାଙ୍କର ଚେତନା ନ ଥିଲା ।
(୫) ତାହାଙ୍କର ହୃଦୟରେ ଭୟ ନାହିଁ ।
(୬) ମାର୍ଗରେ କଣ୍ଟକ ନାହିଁ ।
(୭) ମାଧବଙ୍କର ମନରେ ଚିନ୍ତା ନ ଥିଲା ।
(୮) ସେ ବିଷୟରେ ମୋହର ଆଶା ନାହିଁ ।
(୯) ବ୍ୟାଘ୍ରର ଶୃଗାଳପଦ ଅଛି ।
(୧୦) ରାବଣଙ୍କର କୋଡ଼ିଏ ବାହୁ ଥିଲା ।
(୧୧) ଗୁର୍ଜ୍ଜର ରାଜାଙ୍କର ପୁତ୍ର ନ ଥିଲା ।
(୧୨) ଭାରତ ଭୂମିର ଗର୍ଭରେ ରତ୍ନ ଅଛି ।
(୧୩) ଶ୍ୟାମଙ୍କର ହୃଦୟରେ ଦୟା ନ ଥିଲା ।
(୧୪) ବୃକ୍ଷରୁ ପତ୍ର ଗଳିତ ହୋଇ ଥିଲା ।
(୧୫) ଶିବଙ୍କର ପାଞ୍ଚୋଟି ମୁଖ ଅଛି ।
(୧୬) ଈଶ୍ୱରଙ୍କର ମହିମାର ଅନ୍ତ ନାହିଁ ।
(୧୭) ସମୁଦ୍ରର ତଳ ସ୍ପର୍ଶ ହୋଇ ନାହିଁ ।
(୧୮) ତାହାଙ୍କର ଲଜ୍ଜା ନାହିଁ ।
(୧୯) ଦମୟନ୍ତୀଙ୍କର ଗମନ ହଂସର ଗମନ ପରି ଥିଲା ।
(୨୦) ଦ୍ରୌପଦୀଙ୍କର ନୟନ ହରିଣ ନୟନପରି ଥିଲା ।
(୨୧) ତାହାଙ୍କର ଅପଦ ନାହିଁ ।
(୨୨) ଶକୁନ୍ତଳାଙ୍କର ସ୍ୱଭାବ ଅତି କୋମଳ ଥିଲା ।
(୨୩) ବିଷ୍ଣୁଙ୍କର ଲୋଚନ କମଳ ପ୍ରାୟ ଅଟେ ।

(୧୪) ଭୀଷ୍ମଦେବଙ୍କର ପ୍ରତିଜ୍ଞା ସତ୍ୟ ହୋଇ ଥିଲା ।

(୧୫) ସୂର୍ଯ୍ୟଙ୍କର ରଶ୍ମି ଉଷ୍ଣ ଅଟେ ।

୩ । (କ) ତାହାଙ୍କ ସଙ୍ଗେ ବାନ୍ଧବ ଥିଲେ ।

(ଖ) ସେ ସବାନ୍ଧବ ଥିଲେ ।

ବହୁବ୍ରୀହି ସମାସଦ୍ୱାରା (କ) ଚିହ୍ନିତ ବାକ୍ୟ ଯେମନ୍ତ ସଂକ୍ଷିପ୍ତ ହୋଇ (ଖ) ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

(୧) ଏବିଷୟରେ ତାହାଙ୍କର ଯତ୍ନ ନାହିଁ ।

(୨) ଏଗ୍ରନ୍ଥରେ ଟୀକା ନାହିଁ ।

(୩) ସେ ଯେଉଁ ପଦ୍ମ ଅଘ୍ରାଣକଲେ, ସେଥିରେ ଭ୍ରମରଥିଲା ।

(୪) ଅମୃତପ୍ରତି ତାହାଙ୍କର ସ୍ପୃହା ନାହିଁ ।

(୫) ଦେଶର ଉନ୍ନତି ନିମନ୍ତେ ତାହାଙ୍କର ଚେଷ୍ଟା ଅଛି ।

(୬) ହରିଶ୍ଚନ୍ଦ୍ର ସାଗରର ସହିତ ଧରାର ଏକମାତ୍ର ଈଶ୍ୱର ଥିଲେ ।

(୭) ଯେ ହୃଦୟ ସବୁବେଳେ ନିର୍ଭୟ, ଆଜି ସେହି ହୃଦୟରେ ଭୟ ଜାତ ହେଲା ।

(୮) ବ୍ୟଞ୍ଜନରେ ଲବଣ ଦିଆ ଯାଇ ନାହିଁ ।

(୯) ପତ୍ନୀର ସହିତ ପୁଷ୍ପ ଆହରଣ କର ।

(୧୦) ତାହାଙ୍କର ଆନନ୍ଦ ହେଲା ।

(କ) ଯେ ଦେଶରେ ରାଜା ନାହିଁ, ସେ ଦେଶରେ ରହିବାର ଉଚିତ ନୁହେ ।

(ଖ) ଅରାଜକ ଦେଶରେ ରହିବାର ଉଚିତ ନୁହେ ।

ବହୁବ୍ରୀହି ସମାସଦ୍ୱାରା [କ] ଚିହ୍ନିତ ବାକ୍ୟ ହ୍ରସ୍ୱ ହୋଇ [ଖ] ଚିହ୍ନିତ ବାକ୍ୟରେ ପରିଣତ ହେଲା । ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ସେହିରୂପେ ପରିଣତ କର ।

[୧] ଆଜି ପୃଥିବୀରେ ପାଣ୍ଡବ ରହିବେ ନାହିଁ ।

[୨] ଯେଉଁ କବିତାରେ ରସ ନାହିଁ, ତାହା କବିତା ନୁହେ,

[୩] ଯେଉଁ ଲୋକର ବିଦ୍ୟା ନାହିଁ, ତାହା ଜୀବନ ବୃଥା ।
[୪] ଯେଉଁ ଲୋକର ଧୈର୍ଯ୍ୟ ନାହିଁ ସେ ସୁଖୀହୋଇ ନପାରେ ।
[୫] ଯେଉଁ ଲୋକର ସ୍ତ୍ରୀ ନାହିଁ ସେ ଅପେକ୍ଷାକୃତ ନିଶ୍ଚିନ୍ତ ।
[୬] ଯେଉଁ ଲୋକର ବହୁ ପତ୍ନୀ ତାହାର ବହୁ ଦୁଃଖ ।

[୭] ଯେଉଁ ଲୋକ ପ୍ରତିଷ୍ଠା ଲଭ ନାହିଁ, ତାହା ମତ କେହି ଗ୍ରହଣ କରନ୍ତି ନାହିଁ ।

[୮] ଯେଉଁ ଲୋକର ମନ ଅସ୍ଥିର ସେ କୌଣସି ବିଷୟରେ ପାରଙ୍ଗମ ହୁଏ ନାହିଁ ।

[୯] ଯେ ଲୋକର ଲଜ୍ଜା ନାହିଁ ସେ ସବୁ କରିପାରେ ।

[୧୦] ମାଧବାଚାର୍ଯ୍ୟ ଏପରି ପଣ୍ଡିତ ଥିଲେ ଯେ ତାହାଙ୍କର ପ୍ରତିଦ୍ୱନ୍ଦ୍ୱୀ କେହି ନ ଥିଲା ।

କେବେକେବେ ବହୁବ୍ରୀହି ସମାସ କ୍ରିୟା ବିଶେଷଣରୂପେ ବ୍ୟବହୃତ ହୁଏ । ଯଥା, ସେ ନିର୍ବିବାଦରେ ରାଜ୍ୟ ଭୋଗକଲେ ।

୫ । ନିମ୍ନଲିଖିତ ଖଣ୍ଡବାକ୍ୟମାନଙ୍କରେ ସେହିଭଳି କ୍ରିୟା ବିଶେଷଣଦେଇ ବାକ୍ୟ ପୂର୍ଣ୍ଣ କର ।

ସେ —— ଦିନ ଯାପନ କଲେ । ତୁମ୍ଭେ —— କାର୍ଯ୍ୟ କରି ପାରିବ । ସେ —— ଉପକାର ସ୍ୱୀକାର କଲେ । ତୁମ୍ଭେ —— ଯାଇ ପାରିବ । ଦମୟନ୍ତୀ —— ନଳଙ୍କୁ ଦେଖିଲେ । ଅନସୂୟା —— କହିଲେ । ଦୂତ —— ନିବେଦନ କଲା ।

୬ । ତତ୍ପୁରୁଷ ସମାସଦ୍ୱାରା ନିମ୍ନଲିଖିତ ବାକ୍ୟ ଗୁଡ଼ିକର ହ୍ରସ୍ୱତା ସମ୍ପାଦନ କର ।

[୧] ସେ ରୋଗଦ୍ୱାରା ଗ୍ରସ୍ତ ହୋଇ ଅଛନ୍ତି ।
[୨] ତାହାଙ୍କର ସମ୍ପତ୍ତି ଲୋପକୁ ପ୍ରାପ୍ତ ହୋଇ ଅଛି ।

[୩] ପ୍ରଜ୍ଞାବାନଙ୍କର ତତ୍ତ୍ୱ ବିବେଚନ ଦାନବମାନଙ୍କର ... ଥିଲେ ।

[୪] ବିପ୍ରଙ୍କୁ ଯେଉଁ ସମ୍ପତ୍ତି ଦତ୍ତ ହୋଇ ଅଛି ତାହା ହରଣ କରିବାର ଅନୁଚିତ ।

[୫] ଅଶ୍ୱଙ୍କର ଖୁରଦ୍ୱାରା ଉତ୍ଥିତ ଧୂଳିରେ ଆକାଶ ବ୍ୟାପ୍ତ ହେଲା

[୬] ଦେବଙ୍କର ରାଜା ପ୍ରଜାପତିଙ୍କ ମୁଖରୁ ନିଃସୃତ ବାକ୍ୟ ଶୁଣି ଆନନ୍ଦିତ ହେଲେ ।

[୭] ବୀରମାନେ ଅଶ୍ୱରେ ଆରୂଢ଼ ହୋଇ ଯୁଦ୍ଧର କ୍ଷେତ୍ରକୁ ଗମନ କଲେ ।

[୮] ବିଦ୍ୟା ଧନଦ୍ୱାରା କ୍ରେୟ ନୁହେ ।

[୯] ମଲ୍‌ହାରରାଓ ସିଂହାସନରୁ ଚ୍ୟୁତ ହେଲେ ।

[୧୦] ରାବଣ ସର୍ବଦା ଦୁଷ୍କ୍ରିୟାରେ ରତ ଥିଲେ ।

୭ । ଅବ୍ୟୟୀଭାବ ସମାସଦ୍ୱାରା ନିମ୍ନଲିଖିତ ବାକ୍ୟ ଗୁଡ଼ିକୁ ରୂପାନ୍ତରିତ କର ।

[୧] ରଘୁଙ୍କର ରାଜ୍ୟ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

[୨] ସେ କ୍ଷଣ କ୍ଷଣ ଆସି ମୋତେ ବିରକ୍ତ କରୁ ଅଛନ୍ତି ।

[୩] ମୁ ଘର ଘର କରି ବୁଲି ପାରିବ ନାହିଁ ।

[୪] ବର କନ୍ୟାର ରୂପର ଯୋଗ୍ୟ ଅଟେ ।

[୫] ମୋହର ଯେମନ୍ତ ଶକ୍ତି ମୁ ଯୁଦ୍ଧ କରିବ ।

[୬] ତାହାଙ୍କର ଅକ୍ଷି ସମୀପରେ ଏହି ଘଟଣା ଘଟିଲା ।

[୭] ତାହାଙ୍କର ସ୍ନେହ ମୁ ମରଣ ପର୍ଯ୍ୟନ୍ତ ପାସୋରିବ ନାହିଁ ।

[୮] ପାର୍ବତୀଙ୍କର ନୟନ କର୍ଣ୍ଣ ପର୍ଯ୍ୟନ୍ତ ବିସ୍ତୃତ ଥିଲା ।

[୯] ଧୃତରାଷ୍ଟ୍ର ଜନ୍ମରୁ ଅନ୍ଧ ଥିଲେ ।

[୧୦] ସେତୁବନ୍ଧ ମଳୟ ପର୍ଯ୍ୟନ୍ତ ବିସ୍ତୃତ ।

---

## ୬ଷ୍ଠ ଅଧ୍ୟାୟ ୫ମ ପାଠ ।

## ସଙ୍କ୍ଷେପଣ ।

### ୧ମ ଉଦାହରଣ ।

ଯାହାର ରୂପ ଅଛି, ଯାହାର ଗୁଣ ଅଛି, ଏବଂ ଯାହାର ପ୍ରକୃତି ସରଳ ଅଟେ, ଏପରି ଲୋକକୁ ସମସ୍ତେ ସ୍ନେହ କରନ୍ତି ।

ଯାହାର ରୂପ ଅଛି ଏହି ବାକ୍ୟଟି ତଦ୍ଧିତ ପ୍ରତ୍ୟୟଦ୍ୱାରା ସଂକ୍ଷିପ୍ତ

ହୋଇ ରୂପବାନ ଏହି ବିଶେଷଣରେ ପରିଣତ ହୋଇପାରେ ।

ଯାହାର ଗୁଣଅଛି ବୋଲି ଏଠି ମଧ୍ୟରେ ଶେଷ୍ଠରୂପେ ଗୁଣବାନ ଏହି ବିଶେଷଣରେ ପରିଣତ ହୋଇପାରେ ।

ଯାହାର ପ୍ରକୃତି ସରଳ ଅଟେ ଏହି ବାକ୍ୟଟି ବହୁବ୍ରୀହି ସମାସ ଦ୍ୱାରା ସଂକ୍ଷିପ୍ତ ହୋଇ ସରଳ ପ୍ରକୃତିକ ଏହି ବିଶେଷଣରେ ପରିଣତ ହୋଇ ପାରେ ।

ଏଣୁକରି ସମୁଦାୟ ବାକ୍ୟଟି ସଂକ୍ଷିପ୍ତ ହୋଇ ନିମ୍ନ ଆକାର ଧାରଣ କଲା ।—

ରୂପବାନ୍, ଗୁଣବାନ୍ ଏବଂ ସରଳ ପ୍ରକୃତିକ ଲୋକକୁ ସମସ୍ତେ ସ୍ନେହ କରନ୍ତି ।

୨ ୟ ଉଦାହରଣ ।

ଯେ ବିଦ୍ୟା କରି ଅଛନ୍ତି, ଯାହାଙ୍କର ବୁଦ୍ଧି ସ୍ଥିର ଏବଂ ଯେ ସତ୍ୟ ବଚନ କହନ୍ତି ଏପରି ଲୋକ ସମସ୍ତଙ୍କର ଆଦରର ପାତ୍ର ହୁଅନ୍ତି ।

ଯେ ବିଦ୍ୟା କରି ଅଛନ୍ତି = କୃତବିଦ୍ୟ [ ବହୁବ୍ରୀହି ସମାସ ]

ଯାହାଙ୍କର ବୁଦ୍ଧି ସ୍ଥିର ଅଟେ = ସ୍ଥିର ବୁଦ୍ଧି [ବହୁବ୍ରୀହିସମାସ]

ଯେ ସତ୍ୟ ବଚନ କହନ୍ତି = ସତ୍ୟବାଦୀ [ ଉପପଦତତ୍ପୁରୁଷ ]

ଆଦରର ପାତ୍ର = ଆଦର ପାତ୍ର [ ଷଷ୍ଠୀ ତତ୍ପୁରୁଷ ସମାସ ]

ଏଣୁକରି

ସମୁଦାୟ ବାକ୍ୟଟି ସଂକ୍ଷିପ୍ତ ହୋଇ ନିମ୍ନଆକାର ଧାରଣ କଲା ।

କୃତବିଦ୍ୟ, ସ୍ଥିର ବୁଦ୍ଧି ଏବଂ ସତ୍ୟବାଦୀ ଲୋକ ସମସ୍ତଙ୍କର ଆଦରପାତ୍ର ହୁଅନ୍ତି ।

୩ ୟ ଉଦାହରଣ ।

ଧନୁଃ ଧାରଣ କରିଥିଲେ ଯେ ରାମଚନ୍ଦ୍ର ତାହାଙ୍କୁ ଦେଖି ଯେଉଁମାନେ ବନରେ ତପସ୍ୟା କରୁଥିଲେ ସେମାନେ ଭୟ ତ୍ୟାଗ କଲେ ।

ଧନୁଃ ଧାରଣ କରିଥିଲେ ଯେ ରାମଚନ୍ଦ୍ର = ଧନୁର୍ଦ୍ଧର ରାମଚନ୍ଦ୍ର [ ଉପପଦତତ୍ପୁରୁଷ ]

ଯେଉଁମାନେ ବନରେ ତପସ୍ୟା କରୁଥିଲେ—ବନର ତପସ୍ୱୀମାନେ [ ତଦ୍ଧିତ୍ ପ୍ରତ୍ୟୟ ]

ଦର୍ପ ତ୍ୟାଗ କଲେ—ନିର୍ଦ୍ଦର୍ପ ହେଲେ [ ବହୁବ୍ରୀହି ସମାସ ]

ଏଣୁକରି

ସମୁଦାୟ ବାକ୍ୟ ସଂକ୍ଷିପ୍ତ ହୋଇ ନିମ୍ନ ଆକାର ଧାରଣ କଲା ।

ଧନୁର୍ଦ୍ଧର ରାମଚନ୍ଦ୍ରଙ୍କୁ ଦେଖି ବନର ତପସ୍ୱୀମାନେ ନିର୍ଦ୍ଦର୍ପ ହେଲେ ।

୪ର୍ଥ ଉଦାହରଣ ।

ସେହି ସ୍ତ୍ରୀର ଅଧର ବିମ୍ବପରି ଥିଲା, ନୟନ କମଳପରି ଥିଲା, ଏବଂ ଭୁଜ ମୃଣାଳ ପରି ଥିଲା ।

ଅଧର ବିମ୍ବପରି—ବିମ୍ବାଧରୀ [ ବହୁବ୍ରୀହି ସମାସ ]

ନୟନ କମଳପରି—କମଳ ନୟନା [ ବହୁବ୍ରୀହି ସମାସ ]

ଭୁଜ ମୃଣାଳପରି—ମୃଣାଳଭୁଜା [ ବହୁବ୍ରୀହି ସମାସ ]

ଏଣୁକରି

ସମୁଦାୟ ବାକ୍ୟ ସଂକ୍ଷିପ୍ତ ହୋଇ ନିମ୍ନ ଆକାର ଧାରଣ କଲା ।

ସେହି ସ୍ତ୍ରୀ ବିମ୍ବାଧରୀ, କମଳନୟନା ଏବଂ ମୃଣାଳଭୁଜା ଥିଲେ ।

୫ମ ଉଦାହରଣ ।

ପର୍ବତ ସମ୍ବନ୍ଧୀୟ ପ୍ରଦେଶରେ ତରୁ ଲତାଙ୍କର ଶୋଭା ଦେଖି କାହା ହୃଦୟ ପ୍ରୀତିରେ ପୂର୍ଣ୍ଣ ନହୁଏ ?

ପର୍ବତସମ୍ବନ୍ଧୀୟ—ପାର୍ବତୀୟ [ ତଦ୍ଧିତ ପ୍ରତ୍ୟୟ ]

ତରୁ ଏବଂ ଲତାଙ୍କର—ତରୁଲତାଙ୍କର [ ଦ୍ୱନ୍ଦ୍ୱ ସମାସ ]

ପ୍ରୀତିରେ ପୂର୍ଣ୍ଣ—ପ୍ରୀତିପୂର୍ଣ୍ଣ [ ୩ ୟା ତତ୍ପୁରୁଷ ]

ଏଣୁକରି

ସମସ୍ତ ବାକ୍ୟ ସଂକ୍ଷିପ୍ତ ହୋଇ ନିମ୍ନ ଆକାର ଧାରଣ କଲା ।

ପାର୍ବତୀୟ ପ୍ରଦେଶରେ ତରୁଲତାଙ୍କର ଶୋଭା ଦେଖି କାହାର ହୃଦୟ ପ୍ରୀତିପୂର୍ଣ୍ଣ ନ ହୁଏ ?

## ୬ ଷ୍ଠ ଉଦାହରଣ ।

**ତାହାଙ୍କର ତ୍ୟାଗ କରିବାର ଇଚ୍ଛା ହେଲା ।**
**ତ୍ୟାଗ କରିବାର ଇଚ୍ଛା = ତିତକ୍ଷା (ସନନ୍ତ)**
ତାହାଙ୍କର ତ୍ୟାଗକରିବାର ଇଚ୍ଛାଥିଲା = ସେ ତିତକ୍ଷୁ ହେଲେ ।

ନିମ୍ନଲିଖିତ ବାକ୍ୟଗୁଡ଼ିକୁ ଉଲ୍ଲିଖିତ ଆଦର୍ଶଅନୁସାରେ ସଂକ୍ଷିପ୍ତ କର ।

[୧] ଶିବଙ୍କ ଚୂଡ଼ାରେ ଚନ୍ଦ୍ର ଅଛନ୍ତି ।

[୨] ଅର୍ଥୀମାନଙ୍କର ଚୂଡ଼ାର ମଣି ବୋପଦେବ ବ୍ୟାକରଣ ରୂପ ଅର୍ଣ୍ଣବର କର୍ଣ୍ଣଧାରଣ କରି ଅଛନ୍ତି ।

[୩] ଶରତ୍କାଳର ନିଶିରେ ଆକାଶରେ ଏତେ ନକ୍ଷତ୍ର ଫୁଟନ୍ତି ଯେ ସେମାନଙ୍କର ସଂଖ୍ୟା କରି ହୁଏ ନାହିଁ ।

[୪] ସେନାସମ୍ବନ୍ଧ ଏତେ ଲୋକ ଥିଲେ ଯେ ସେମାନଙ୍କୁ ଗଣି ହେଲା ନାହିଁ ।

(୫) ସୁରମାନଙ୍କର ଈଶ୍ୱର ସ୍ମରଣ କରିବାରୁ ସେତେଙ୍କର ପତି ପୁଷ୍ପର ଧନୁ ହସ୍ତରେ ଘେନି ତାହାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ।

[୬] ଯଦତ ମୋହର ଧନୁ ପୁଷ୍ପରେ ନିର୍ମିତ, ତଥାପି ବସନ୍ତଙ୍କର ସହାୟତା ଲଭିଲେ, ଯେ ଶିବଙ୍କ ପାଣିରେ ପିନାକ ଅଛି ତାହାଙ୍କର ସୁଦ୍ଧା ଧୈର୍ଯ୍ୟର ଲୋପ କରି ପାରେ ।

[୭] ଋତୁମାନଙ୍କର ରାଜା ଯେ ବସନ୍ତ ତାହାଙ୍କର ଆଗମନ ହେଲେ ଜଳରେ ପଦ୍ମ ହୁଏ, ବୃକ୍ଷମାନଙ୍କରେ ପୁଷ୍ପ ହୁଏ, ପବନ ସୁଗନ୍ଧ ଯୁକ୍ତ ହୁଅନ୍ତି ।

[୮] କାହାର ଚକ୍ଷୁର ପ୍ରସ୍ରବର ପ୍ରସ୍ରୁ ଯାହାର ଏମନ୍ତ ଯେ ଯମୁନାର ଜଳ, ସେ ଜଳରେ ସ୍ନାନ କରି କିଏ ତୃପ୍ତ ନ ହେବ ?

[୯] ଦେଖ, ଦେଖ, ଶ୍ୟାମଳବନ ଦ୍ୱାରା ବେଷ୍ଟିତ ଅଟେ ଏମନ୍ତ ଯେ ପଦ୍ମା ତାହା କେମନ୍ତ ସୁନ୍ଦର ଦିଶୁଅଛି; ନୀଳମେଘ ମାନଙ୍କ ଦ୍ୱାରା ବେଷ୍ଟିତ ହେଲେ ଚନ୍ଦ୍ରଙ୍କର ବିମ୍ବ ଯେମନ୍ତ

ଶୋଭାପାଏ ଏହି ସରୋବର ସେହିପରି ଶୋଭା ପାଉଅଛି ।

(୧୦) ଏମନ୍ତ ଅନେକ ଲୋକ ଅଛନ୍ତି ଯେ ସେମାନଙ୍କର ଭାଗ୍ୟ ଅତି ମନ୍ଦ, ସେମାନେ ଯେ ଯୋଗ୍ୟ ଏହା ଦେଖାଇବା ନିମନ୍ତେ ମରଣ ପର୍ଯ୍ୟନ୍ତ ଅବକାଶ ପାଆନ୍ତି ନାହିଁ ।

(୧୧) ଯାହାର ତଳ ସ୍ପର୍ଶ ହୋଇ ନାହିଁ ଏମନ୍ତ ଯେ ସାଗର ତାହା ଗର୍ଭରେ କେତେ ଉଜ୍ଜ୍ୱଳ ମୁକ୍ତା ଅଛନ୍ତି । ଉଦ୍ଧାର କରିବା ଲୋକ ନ ଥିବାରୁ ସେମାନଙ୍କର ଆଦର ହେଉ ନାହିଁ । ଯେମାନଙ୍କର ଗୁଣ ଅଛି ସେମାନଙ୍କ ମଧ୍ୟରେ ଅଧିକାଂଶର ଦଶା ଏହିପରି ଜାଣ ।

(୧୨) ମୁଁ ହରିଦ୍ୱାରରେ ଶୈଳରୁ ଅବତୀର୍ଣ୍ଣ ଜହ୍ନୁର କନ୍ୟାଙ୍କର ଜଳର କଲ୍ଲୋଳ ଶ୍ରବଣ କରି ଅଛି, ଦଣ୍ଡକାରଣ୍ୟରୁ ସୀତା ଏବଂ ରାମଙ୍କର ଚରଣର ଚିହ୍ନ ଦର୍ଶନ କରି ଅଛି ।

(୧୩) ଜନକ କନ୍ୟାଙ୍କର ହୃଦୟରୂପ ପଦ୍ମର ମିହିର ଏବଂ ବୀରମାନଙ୍କର ଶ୍ରେଷ୍ଠ ରାମ ରାକ୍ଷସମାନଙ୍କର ଅଧିପ ଲଙ୍କାର ଈଶ୍ୱରଙ୍କୁ ଯୁଦ୍ଧରେ ନାଶ କରି ତାହାଙ୍କ ପରେ ଜାତ ହୋଇ ଥିବା ବିଭୀଷଣଙ୍କୁ ରାଜାଙ୍କ ଛତ୍ର ପ୍ରଦାନ କଲେ ।

(୧୪) ଯଦୁଙ୍କର କୁଳର ଅବତଂସ ଯେ ଶ୍ରୀକୃଷ୍ଣ ସେ ପାଣ୍ଡୁଙ୍କର ପୁତ୍ରମାନଙ୍କର ସଖା ହୋଇ ଧୃତରାଷ୍ଟ୍ରଙ୍କର ପୁତ୍ରର କୁଚକ୍ରରୁ ସେମାନଙ୍କୁ ଉଦ୍ଧାର କଲେ ।

(୧୫) ପର୍ବତମାନଙ୍କର ରାଜାଙ୍କର ଦୁହିତା ବସନ୍ତ ପୁଷ୍ପର ଆଭରଣରେ ସଜ୍ଜିତ ହୋଇ ହିମାଳୟର ଶୃଙ୍ଗକୁ ଗଲେ ।

---

## ୩ ୟ ଅଧ୍ୟାୟ ।

### ସୂକ୍ଷ୍ମ ପ୍ରୟୋଗ ।

ଅସଭ୍ୟାବସ୍ଥାରେ ମନୁଷ୍ୟଜାତିର ବୁଦ୍ଧି ପ୍ରଧାନତଃ ଇନ୍ଦ୍ରିୟସାର ହୁଦ୍ ଅବଦ୍ଧ ଥିଲା । ପ୍ରାୟ ପ୍ରତ୍ୟେକ ଅସଭ୍ୟ ଭାଷାରେ

ଜଡ଼ପଦାର୍ଥମାନଙ୍କର ନାମ ଅଛି । ମାତ୍ର ଯେଉଁ ଭାଷା ଯେଉଁ ପରିମାଣରେ ଅନୁନ୍ନତ ସେହି ଭାଷାରେ ଅନ୍ତର ପଦାର୍ଥର ନାମ ବିରଳ ଲକ୍ଷିତ ହୁଏ । ମନୁଷ୍ୟମାନେ ଅଗ୍ରେ ସ୍ଥୂଳ ପଦାର୍ଥର ନାମ ଦେଇ ସେହି ନାମ ବ୍ୟବହାର କରିବାକୁ ଲାଗିଲେ । କ୍ରମଶଃ ସେମାନଙ୍କର ସଭ୍ୟତା, ବହୁଦର୍ଶିତା ଏବଂ ବିଚାରଶକ୍ତି ଯେମନ୍ତ ବଢ଼ିବାକୁ ଲାଗିଲା ନୂତନ ଭାବ, ନୂତନ ପଦାର୍ଥର ନାମ ଦେବାର ଆବଶ୍ୟକତା ବୁଝି ପାରିଲେ । ସୁତରାଂ କ୍ରମଶଃ ନୂତନ ଶବ୍ଦମାନ ସର୍ଜ୍ଜନା କରି ମନର ଭାବ ବ୍ୟକ୍ତ କଲେ । ନୂତନ ଶବ୍ଦ ସର୍ଜ୍ଜନା କରିବାବେଳେ, ଯେଉଁ ପଦାର୍ଥର ନାମ ଦେବାର ଆବଶ୍ୟକ ଦେଖିଲେ, ପୂର୍ବ ଅଖ୍ୟାତ କୌଣସି ସ୍ଥୂଳପଦାର୍ଥ ସଙ୍ଗେ ତାହାର କେତେକ ଅଂଶରେ ସାଦୃଶ୍ୟ ଦେଖି ସେହି ନୂତନ ପଦାର୍ଥର ମଧ୍ୟ ସେହି ନାମ ଦେଲେ । ଉଦାହରଣ ସ୍ୱରୂପ ନିମ୍ନରେ ଏବିଷୟର କେତେଗୁଡ଼ି ଦୃଷ୍ଟାନ୍ତ ପ୍ରଦର୍ଶିତ ହେଉ ଅଛି ।

ଅସଭ୍ୟାବସ୍ଥାରେ ଲୋକେ ଯୁଦ୍ଧରେ ପ୍ରସ୍ତର ବ୍ୟବହାର କରୁଥିଲେ । ଶତ୍ରୁର ହସ୍ତ ନିକ୍ଷିପ୍ତ ପ୍ରସ୍ତର ଆସି ଉପରେ ପଡ଼େ ତହିଁର ଶରୀର ଆହତ ହୁଏ ଏବଂ ମୃତ୍ୟୁ ହୁଏ । ପ୍ରସ୍ତର ପତନ ବ୍ୟତୀତ ଅନ୍ୟପ୍ରକାର ଅନିଷ୍ଟ ଦେଖି ସେହି ପ୍ରସ୍ତର ପତନସଙ୍ଗେ ସେହି ଅନିଷ୍ଟମାନଙ୍କର ସାମ୍ୟ ଦେଖି ଆପଦ୍ ବୋଲି ଗୋଟିଏ ନୂତନ ଶବ୍ଦ ସର୍ଜ୍ଜନା କଲେ । ଆପଦ୍ ଶବ୍ଦର ପ୍ରକୃତ ଅର୍ଥ ଯାହା ତ ଉପରେ ପଡ଼େ । ମାତ୍ର ସେହି ପ୍ରକୃତ ଅର୍ଥ କାଳକ୍ରମରେ ଲୁପ୍ତ ହୋଇ ଅନିଷ୍ଟକର ଘଟଣାମାତ୍ରର ନାମ ଆପଦ୍ ହୋଇଅଛି ।

ଅସଭ୍ୟାବସ୍ଥାରେ ଲୋକେ ସନ୍ତରଣଦ୍ୱାରା ନଦୀ ପାର ହେଉ ଥିଲେ । କ୍ରମଶଃ ଆପଦରୁ ମୁକ୍ତି ଲଭିବା ଏବଂ ସନ୍ତରଣଦ୍ୱାରା ନଦୀ ପାରହେବା ଏ ଉଭୟ କଥାର ଅଂଶିକ ସାମ୍ୟ ଦେଖି "ଅମୁକେଇ ଲୋକ ଆପଦ ଉତ୍ତୀର୍ଣ୍ଣ ହେଲେ". ଉତ୍ତରଣ ଶବ୍ଦର

ଏହିପ୍ରକାର ପ୍ରୟୋଗ କରିବାକୁ ଆରମ୍ଭ କଲେ । ସେ ଆପଦ ଉତ୍ତୀର୍ଣ୍ଣ ହେଲେ—ଏହି ବାକ୍ୟର ପ୍ରକୃତ ଅର୍ଥ ଏହି — ସେ ଆପଦକୁ ପହଁର ପାର ହୋଇ ଗଲେ । ଫଳତଃ ସେ ଆପଦ ଉତ୍ତୀର୍ଣ୍ଣ ହେଲେ । ଏହି ବାକ୍ୟ ମଧ୍ୟରେ ଗୋଟିଏ ଉପମା ପ୍ରଚ୍ଛନ୍ନ ଭାବରେ ଅଛି । ସେ ଉପମାଟି ଏହି — ଆପଦ ନଦୀପରି, ଲୋକେ କଷ୍ଠ ପୃଷ୍ଠରେ ଯେମନ୍ତ ନଦୀ ପାର ହୁଅନ୍ତି ସେ ସେହି ରୂପେ ଆପଦକୁ ଅତିକ୍ରମ କଲେ ।

ଗମ୍ଭୀର ଶବ୍ଦ ପ୍ରଥମରେ ନଦୀ, ସରୋବର ପ୍ରଭୃତିର ବିଶେଷଣରୂପେ ପ୍ରୟୋଗ ହେଉ ଥିଲା । ଏମନ୍ତ ଅନେକ ଲୋକ ଅଛନ୍ତି ଯେ ସେମାନଙ୍କ ମନରେ କଅଣ ଅଛି ତାହା ଜାଣିବାର କଠିଣ । ନଦୀ ଗମ୍ଭୀର ହେଲେ ତାହା ଗର୍ଭରେ କଅଣ ଅଛି ତାହା ଜାଣିବାର କଠିଣ । ସୁତରାଂ ଲୋକେ ଯେଉଁ ଗମ୍ଭୀର ଶବ୍ଦକୁ ନଦୀପ୍ରତି ପ୍ରୟୋଗ କରୁ ଥିଲେ ପ୍ରୟୋଜନ ବଶତଃ ସେହି ଶବ୍ଦକୁ ପୁଣି ମନୁଷ୍ୟର ମନ ପ୍ରତି ପ୍ରୟୋଗ କରିବାକୁ ଆରମ୍ଭ କଲେ ।

ସମାଜର ଅଧମ ଅବସ୍ଥାରେ ତୀକ୍ଷ୍ଣ ଏହି ଶବ୍ଦଟି ଅସ୍ତ୍ର ପ୍ରତି ପ୍ରୟୋଗ ହେଉ ଥିଲା । ଏମନ୍ତ ଅନେକ ଲୋକ ଅଛନ୍ତି ଯେ ସେମାନଙ୍କର ବୁଦ୍ଧି ଅତି ଉତ୍ତମ । ଯେଉଁ କାର୍ଯ୍ୟରେ ଲଗାନ୍ତି ସେହି କାର୍ଯ୍ୟ ଉତ୍ତମରୂପେ ସିଦ୍ଧ କରନ୍ତି । ସୁତରାଂ ଯେଉଁ ତୀକ୍ଷ୍ଣ ଶବ୍ଦ ପୂର୍ବରେ କେବଳ ଅସ୍ତ୍ର ପ୍ରତି ପ୍ରୟୋଗ ହେଉ ଥିଲା, ପ୍ରୟୋଜନ ବଶତଃ ସେହି ଶବ୍ଦ ପୁଣି ବୁଦ୍ଧି ପ୍ରତି ପ୍ରୟୋଗ ହେଲା ।

ମୂଳଶବ୍ଦ ପ୍ରଥମତଃ ବୃକ୍ଷର ମୂଳପ୍ରତି ପ୍ରୟୋଗ ହେଉଥିଲା । ମୂଳ ନଥିଲେ ବୃକ୍ଷ ଜାତ ହୁଏ ନାହିଁ ଏହା ଲୋକେ ଜଡ଼ସଂସାରର କାର୍ଯ୍ୟ ଦେଖି ଅଗତ୍ୟା ଜାଣି ଥିଲେ । କୌଣସି ଲୋକର ଯତ୍ନଦ୍ୱାରା ଗୋଟିଏ କାର୍ଯ୍ୟ ସିଦ୍ଧ ହେବାର ଦେଖିଲେ । ମୂଳ ନ ଥିଲେ ବୃକ୍ଷ କାହୁଁ ଆସନ୍ତା ? ସେହିପରି ଏ ଲୋକ ନ ଥିଲେ

ଏ କାର୍ଯ୍ୟ ହଏ କଣନ୍ତା ? ମନ ମଧ୍ୟରେ ଏହି ବତର୍କ କର "ସେ ଏହି କାର୍ଯ୍ୟର ମୂଳ" ଏହି ପ୍ରୟୋଗ ଆରମ୍ଭ କଲେ ।

ଫଳଶବ୍ଦ ବୋଧହୁଏ ପ୍ରଥମତଃ ବୃକ୍ଷ ଫଳପ୍ରତି ପ୍ରୟୋଗ ହୋଉ ଥିଲା । ଲୋକେ ଯେତେବେଳେ ଧାତୁ ବ୍ୟବହାର କର-ବାକୁ ଶିଖିଲେ ସେହି ଶବ୍ଦ ପୁଣି ତାଙ୍କର ଫଳପ୍ରତି ପ୍ରୟୋଗ ହେଲା । ସେଥିରେ ପୁଣି କାର୍ଯ୍ୟର ଫଳପ୍ରତି ପ୍ରୟୋଗ ହେଲା ।

ଉଦ୍ଧାର ଏହି ଶବ୍ଦର ଅର୍ଥ ବିଚାର ଦେଖ । ଏହି ଶବ୍ଦର ପ୍ରକୃତ ଅର୍ଥ ଉଠାଇବାର । ଏହି ଶବ୍ଦର ଆଦିମ ପ୍ରୟୋଗ ଏହି ଅର୍ଥରେ ହୋଇ ଥିଲା । ପଙ୍କୋଦ୍ଧାର ଏ ଗୋଟିଏ ସେହି ପ୍ରୟୋ-ଗର ଦୃଷ୍ଟାନ୍ତ । ଫଳତଃ ଏହି ଶବ୍ଦ ପ୍ରଥମରେ ନଦୀ, ପୁଷ୍କରିଣୀ ପ୍ରଭୃତିରେ ପ୍ରୟୋଗ ହେଉଥିଲା । ପଛକୁ ପୁଣି ପ୍ରୟୋଜନ ବଶରୁ ଅପଦପ୍ରତି ପ୍ରୟୋଗ ହେଲା । ଅପଦରୁ ତାହାକୁ ଉଦ୍ଧାର କର—ଏହାର ପ୍ରକୃତ ଅର୍ଥ ଏହି—ନଦୀରେ କେହି ପଡ଼ି ଗଲେ ତାହାକୁ ଯେମନ୍ତ ଉଠାନ୍ତି ସେହି ଲୋକକୁ ଅପଦରୁ ସେହିରୂପେ ବଞ୍ଚାଅ ।

ଉଲ୍ଲିଖିତ ଉଦାହରଣମାନଙ୍କରୁ ସ୍ପଷ୍ଟ ପ୍ରତୀତ ହେବ ଯେ ଯେଉଁ ଶବ୍ଦମାନ ପୂର୍ବକାଳେ କେବଳ ଜଡ଼ପଦାର୍ଥ ପ୍ରତି ପ୍ରୟୋଗ ହୋଇ ଥିଲା ସେହି ଶବ୍ଦ ପ୍ରୟୋଜନ ବଶରୁ ସେହି ଜଡ଼ପଦାର୍ଥର ଆଂଶିକ ସମାନ ଅନ୍ୟ କୌଣସି ପଦାର୍ଥ ପ୍ରତି ପ୍ରୟୋଗ ହେବାର ଆରମ୍ଭ ହେଲା । ପ୍ରତ୍ୟେକ ଭାଷାରେ ଏପରି ପ୍ରୟୋଗର ସହସ୍ର ଉଦାହରଣ ଅଛି । ଯେଉଁ ଭାଷା ଯେଉଁ ପରିମାଣରେ ଉନ୍ନତ ସେହି ଭାଷାରେ ଏପରି ଶବ୍ଦର ସେହି ପରିମାଣରେ ପ୍ରାଚୁର୍ଯ୍ୟ ଲକ୍ଷିତ ହୁଏ ।

ଏହିପ୍ରକାର ପ୍ରୟୋଗକୁ ସୂକ୍ଷ୍ମପ୍ରୟୋଗ ବୋଲି । ଉତ୍କଳ ଭାଷାରେ ଏପରି ପ୍ରୟୋଗ ଅନେକ ଦେଖା ଯାଏ । ଛାତ୍ରମାନ-ଙ୍କର ଏହିପରି ପ୍ରୟୋଗର ଅଭ୍ୟାସ ଜନ୍ମାଇବା ନିମନ୍ତେ ନିମ୍ନରେ

କେତେଗୁଡ଼ିଏ ସାଧନା ପ୍ରଦତ୍ତ ହେଲା । ପ୍ରତ୍ୟେକ ସାଧନାର ମୂଳରେ ଦୋଟିଏ ଯୋଡ଼ିଏ ଆଦର୍ଶ ମଧ୍ୟ ଦିଆଗଲା । ଶିକ୍ଷକମାନେ ସେହି ଆଦର୍ଶର ଅନୁକରଣରେ ବାକ୍ୟ ରଚନା କରିବାକୁ ଛାତ୍ରଙ୍କୁ କହିବେ ଏବଂ ଛାତ୍ରମାନେ ବାକ୍ୟ ରଚନା କଲେ ସେମାନଙ୍କର ଭ୍ରମ ସଂଶୋଧନ କରି ଦେବେ । ଏହିକି ପ୍ରୟୋଗରେ ଛାତ୍ର-ମାନଙ୍କର ଅଭ୍ୟାସ ଜନ୍ମାଇ ପାରିଲେ ଭାଷାରେ ସେମାନଙ୍କର ସଂସ୍କାର ଦୃଢ଼ ହେବାର ସମ୍ଭାବନା ।

## ପ୍ରଥମ ସାଧନା ।

### ବିଶେଷ୍ୟ ।

(୧) ଅଧମ ପ୍ରୟୋଗ—ସେ ଶଯ୍ୟାରେ ଶୟନ କରି ଅଛନ୍ତି ।
ସୂକ୍ଷ୍ମ ପ୍ରୟୋଗ—ନଦୀ ଶଯ୍ୟାରେ ଅନେକ ବାଲୁକା ଥାଏ ।
(୨) ଅଧମ ପ୍ରୟୋଗ—ବୃକ୍ଷର ଶାଖା କମ୍ପିତ ହେଉ ଅଛି ।
ସୂକ୍ଷ୍ମ ପ୍ରୟୋଗ—ଭାଗୀରଥୀ ଗଙ୍ଗାର ଗୋଟିଏ ଶାଖା ।

ନିମ୍ନଲିଖିତ ପ୍ରତ୍ୟେକ ଶବ୍ଦକୁ ବ୍ୟବହାର କରି ଅଧମପ୍ରୟୋଗ ବିଶିଷ୍ଟ ଏବଂ ସୂକ୍ଷ୍ମପ୍ରୟୋଗ ବିଶିଷ୍ଟ ଯୋଡ଼ିଏ ବାକ୍ୟ ରଚନା କର,

କଣ୍ଠା, ପତ୍ର, ପଦ, ମୁଖ, ପୃଷ୍ଠ, କଣ୍ଠ, ଦନ୍ତ, ଚକ୍ର, ଜାଲ, ପାର୍ଶ୍ୱ, ପଥ, କଳଙ୍କ, ରସ, ସୋପାନ, ତୃଷା, ଛତ୍ର, ଅନ୍ତ, ପକ୍ଷ, ଶିର, ଗର୍ଭ, ବ୍ୟସ୍ତ, ଭଙ୍ଗ, ଅଗାଡ଼ି, ତ୍ରୁଟୀ, ବେଣୀ, ଶୂଳ, ଦାହ, ଜାଲମ୍ବ, ଧକ୍, ଶୃଙ୍ଗ, ବୀଜ, ପକ୍ଷ, ଗତି, ବକ୍ଷ, ସ୍ୱାଦ, ରୁଚି, ମର୍ମ, କ୍ଷୀର, ମଳ, ଧାର, ମାର୍ଜନ, କ୍ଷାଳନ ।

## ୨ୟ ସାଧନା ।

### ବିଶେଷଣ ।

( ୧ ) ଅଧମ ପ୍ରୟୋଗ—ଜଳ ତରଳ ଅଟେ ।
ସୂକ୍ଷ୍ମ ପ୍ରୟୋଗ—ତାହାଙ୍କର ମତି ତରଳ ଅଟେ ।
( ୨ ) ଅଧମ ପ୍ରୟୋଗ—ଶାଳବୃକ୍ଷ ସରଳ ଅଟେ ।
ସୂକ୍ଷ୍ମପ୍ରୟୋଗ—ରାମଚନ୍ଦ୍ରଙ୍କ ପ୍ରକୃତି ଅତି ସରଳ ଥିଲା ।

ନିମ୍ନଲିଖିତ ପ୍ରତ୍ୟେକ ବିଶେଷଣ ବ୍ୟବହାର କରି ଅଧମ ଅଡ଼ ଶ୍ରେଷ୍ଠ ଉଭୟ ପ୍ରୟୋଗ ବିଶିଷ୍ଟ ବାକ୍ୟ ରଚନା କର ।

ଧୀର, ଚଞ୍ଚଳ, ଚକ୍ର, ବ୍ୟସ୍ତ, ବାଗ୍ର, ଗୁରୁ, ଲଘୁ, ଉଷ୍ଣ, ନିର୍ମଳ, ନିସ୍ତେଜ, ଖଞ୍ଜ, ଅସ୍ଥିର, ଉଜ୍ଜ୍ୱଳ, କଠିଣ, କ୍ଷୁଦ୍ର, ସଫଳ, ନୀରସ, ଅବଶ, ଗମ୍ଭୀର, କୋମଳ, ସ୍ଥୂଳ, ସୂକ୍ଷ୍ମ, ଶୀତଳ ଉଚ୍ଚ, ଶୁଷ୍କ, ଦନ୍ତୁର, ତୃପ୍ତ, ଅର୍ଦ୍ର, ଭୂଷିତ, ମୂଢ଼, ଅଗାଧ, ଧନୁର୍ଦ୍ଧର, ଉଦାମ, କ୍ଷିପ୍ତ, ପ୍ରସନ୍ନ, ଦର୍ପ, ଅନ୍ଦୋଳିତ, ଅବ୍ୟାହତ ଅକ୍ଷତ, ପ୍ରଫୁଲ୍ଲ, ଅନ୍ଧ, ଅନର୍ଗଳ ।

### ୩ୟ ସାଧନୀ ।

### କ୍ରିୟା ।

୧ । ଅଧମ ପ୍ରୟୋଗ—ସେ ଘଣ୍ଟ ଭାଙ୍ଗି ଦେଲେ ।

ଶ୍ରେଷ୍ଠ ପ୍ରୟୋଗ—ତାହାଙ୍କ ନିଦ୍ରା ଭଙ୍ଗ ହେଲା ।

ଏହି ଅଦର୍ଶ ଅନୁକରଣରେ ନିମ୍ନଲିଖିତ କ୍ରିୟା ପଦଗୁଡ଼ିକୁ ଉଭୟ ପ୍ରକାରେ ପ୍ରୟୋଗକରି ବାକ୍ୟ ରଚନା କର ।

ଉଠିବାର, ମନ୍ଥିବାର, ଖୋଳିବାର, ରଖିବାର, ମରିବାର, ସଚରିବାର, ଟାଣିବାର, ପଡ଼ିବାର, ଫଳିବାର, ଛେଦିବାର, ବାନ୍ଧିବାର, ବୁଡ଼ିବାର, ବନ୍ଧିବାର, ଖସିବାର, ଉଚ୍ଛୁଳିବାର, ଢଳିବାର, ରଚିବାର, ମୋଚନ କରିବାର, ବସିବାର, ଭଜିବାର, ନୋଇଁବାର ।

## ୪ର୍ଥ ଅଧ୍ୟାୟ ।

### ପ୍ରତିଶବ୍ଦ ।

ପ୍ରତିଶବ୍ଦର ପ୍ରକୃତ ବ୍ୟବହାର ନ ଜାଣିଲେ ରଚନାରେ ଅନେକ ଦୋଷ ହେବାର ସମ୍ଭାବନା । ଯଦିଓ ଏକ ପଦାର୍ଥର ଅନେକ ନାମଅଛି ତଥାପି ସେହି ସମୁଦାୟ ନାମର ଅର୍ଥରେ ଯେ କୌଣସି ଭେଦ ନାହିଁ ଏମନ୍ତ ବୋଧ ହେଉ ନାହିଁ । ଭାରତ-

ବର୍ଷର ଅଧିକାଂଶ ଗ୍ରନ୍ଥକାର ପ୍ରତିଶବ୍ଦ ବ୍ୟବହାର ବିଷୟରେ ସାବଧାନ ହୋଇ ନାହାନ୍ତି ଏବଂ ଭିନ୍ନ ୨ ପ୍ରତିଶବ୍ଦର ସୂକ୍ଷ୍ମ ପ୍ରଭେଦ ଶିଖାଇବାର ଉପଯୋଗୀ କୌଣସି ଗ୍ରନ୍ଥ ଏ ପ୍ରଦେଶରେ ନାହିଁ । ତେଣୁ ଏ ବିଷୟରେ ଗୋଟିଏ ମହତ୍ ତ୍ରୁଟି ଅଛି । ଶିକ୍ଷକମାନେ ସୁଦ୍ଧା ଶିକ୍ଷା ଦେବାବେଳେ ପ୍ରତିଶବ୍ଦମାନଙ୍କର ସୂକ୍ଷ୍ମ ପ୍ରଭେଦ ବୁଝାଇ ଦିଅନ୍ତି ନାହିଁ । ଛାତ୍ରମାନେ ମଧୁର ଶବ୍ଦର ଅର୍ଥ ପଚାରିଲେ । ଶିକ୍ଷକ ମଧୁର ଶବ୍ଦର ଅର୍ଥ ମିଷ୍ଟ କହି ଦେଲେ । ମାତ୍ର ଯଦିଚ ମଧୁର ଓ ମିଷ୍ଟ ଏ ଦୁହେଁ ପ୍ରତିଶବ୍ଦ ତଥାଚ ଏମାନଙ୍କର ବ୍ୟବହାରଗତ ପ୍ରଭେଦ ଦେଖାଯାଏ । ନଳଙ୍କର ଅଦ୍ଭୁତ ଅତ୍ୟନ୍ତ ମିଷ୍ଟ ଥିଲା କେହି ଏପରି ପ୍ରୟୋଗ କରିବେ ନାହିଁ । ଛାତ୍ରମାନଙ୍କୁ କୌଣସି ଶବ୍ଦର ପ୍ରତିଶବ୍ଦ କହି ସେମାନଙ୍କର ବ୍ୟବହାରଗତ ବିଭେଦ ଦେଖାଇ ଦେବାର ଉଚିତ । ସମୀରଣ ଓ ପ୍ରଭଞ୍ଜନ ଏ ଦୁହେଁ ପ୍ରତିଶବ୍ଦ ଉଭୟର ଅର୍ଥ ପବନ ତଥାଚ ଏ ଦୁଇ ଶବ୍ଦର ଅର୍ଥରେ ଗୋଟିଏ ସୂକ୍ଷ୍ମ ପ୍ରଭେଦ ଅଛି । ଉଭୟ ଶବ୍ଦର ଧାତ୍ୱର୍ଥ ଯେବେ ବିଚାର କଲେ ସେହି ପ୍ରଭେଦ ସ୍ପଷ୍ଟ ଅନୁଭୂତ ହେବ । ସମୀରଣ ଶବ୍ଦର ପ୍ରକୃତ ଅର୍ଥ ପ୍ରେରଣ କରେ । ଅର୍ଥାତ୍ ଆନ୍ଦୋଳିତ କରେ । ପ୍ରଭଞ୍ଜନ ଅର୍ଥାତ୍ ଯାହା ଭାଙ୍ଗି ପକାଏ । ସୁତରାଂ ମୃଦୁପବନ ବର୍ଣ୍ଣନା ସ୍ଥଳରେ ସମୀରଣ ଏବଂ ଉଦ୍ଧତ ପବନ ବର୍ଣ୍ଣନା ସ୍ଥଳରେ ପ୍ରଭଞ୍ଜନ ବ୍ୟବହାର କରିବାର ସଙ୍ଗତ ଅଟେ । ଧୀର ପ୍ରଭଞ୍ଜନ ଏପରି ପ୍ରୟୋଗ ଯେ ଅଶୁଦ୍ଧ ହେବ ତାହା ନୁହେ । ମାତ୍ର ଧୀର ସମୀରଣ ଅଧିକତର ସଙ୍ଗତ ହେବ । ଉତ୍କୃଷ୍ଟ ଗ୍ରନ୍ଥକାରମାନଙ୍କ ରଚନାରେ ଧୀର ପ୍ରଭଞ୍ଜନ ଏହିପରି ପ୍ରୟୋଗ ବିରଳ ଲକ୍ଷିତ ହୁଏ ।

ଏହି ଅଧ୍ୟାୟରେ କେତେକ ପ୍ରତିଶବ୍ଦର ଯେଉଁ ପ୍ରଭେଦ ପ୍ରଦର୍ଶିତ ହେଲା ତାହା ଯେ ସମ୍ପୂର୍ଣ୍ଣ ଅଭ୍ରାନ୍ତ ଆମ୍ଭେମାନେ ସାହସ ପୂର୍ବକ ଏହା କହି ନ ପାରୁଁ । କେବଳ ସେମାନଙ୍କର ଯେମନ୍ତ ବ୍ୟବହାର ଗତ ପ୍ରଭେଦ ଦେଖିଅଛୁଁ ସେହି ପ୍ରଭେଦ ଅନୁସାରେ ଲେଖିଲୁଁ । କୌଣସି ୨ ସ୍ଥଳରେ ଆମ୍ଭମାନଙ୍କର ମତର ସମ୍ପୂର୍ଣ୍ଣ

ବହୁବିଧ ଦୃଷ୍ଟାନ୍ତଦ୍ୱାରା ପ୍ରଦର୍ଶିତ ହୋଇପାରେ । ଫଳତଃ ଛାତ୍ରଙ୍କୁ ଗୋଟିଏ ନୂତନ ମାର୍ଗ ପ୍ରଦର୍ଶନ କରିବାର ଆମ୍ଭମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଅଟେ । ଶିକ୍ଷକମହୋଦୟମାନେ ଏହିବିଷୟମାନ ଉତ୍ତମରୂପେ ଆଲୋଚନା କଲେ ଏବଂ ଛାତ୍ରମାନଙ୍କୁ ପ୍ରତିଶବ୍ଦଗତ ପ୍ରଭେଦ ବୁଝାଇ ଦେବାକୁ ଯତ୍ନ ହେଲେ ଭାଷାଶିକ୍ଷାର ଅନେକ ସାହାଯ୍ୟ ହେବ ।

ଏହି ଅଧ୍ୟାୟର ଶେଷରେ କେତେଗୁଡ଼ିଏ ଖଣ୍ଡବାକ୍ୟ ପ୍ରଦତ୍ତ ହେଲା । ଛାତ୍ରମାନେ ଉକ୍ତ ବାକ୍ୟ ସମୂହର ଶୂନ୍ୟସ୍ଥଳମାନଙ୍କରେ ଉପଯୁକ୍ତ ଶବ୍ଦ ବ୍ୟବହାର କରି ବାକ୍ୟ ପୂର୍ଣ୍ଣ କରିବେ । କିନ୍ତୁ କେବଳ ସେହି ବାକ୍ୟଗୁଡ଼ିକ ପ୍ରତି ଆବଦ୍ଧ ରହିବେ ନାହିଁ । ସେହି ବାକ୍ୟମାନଙ୍କୁ ଆଦର୍ଶ କରି ଅନ୍ୟ ବାକ୍ୟ ସେହିରୂପେ ପୂର୍ଣ୍ଣ କରିବାକୁ କହିବେ ଏବଂ ଅସାଧୁ ପ୍ରୟୋଗ ବିଶିଷ୍ଟ ବାକ୍ୟ ରଚନା କରି ଛାତ୍ରଙ୍କୁ ତାହା ସଂଶୋଧନ କରିବାକୁ କହିବେ ।

ଛାତ୍ରମାନେ ଯେଉଁ ଗ୍ରନ୍ଥ ପାଠ୍ୟ ପୁସ୍ତକରୂପେ ବ୍ୟବହାର କରୁଥିବେ ସେହି ଗ୍ରନ୍ଥ ମଧ୍ୟରେ ଯେଉଁ ସ୍ଥଳମାନଙ୍କରେ ଏପରି ପ୍ରୟୋଗ ଲକ୍ଷିତ ହେବ, ସେହି ପ୍ରୟୋଗ ସାଧୁ ହୋଇଥିଲେ ତାହାକୁ ସମର୍ଥନ କରିବା ନିମନ୍ତେ ଆଦେଶ କରିବା ଉଚିତ । ଅସାଧୁ ହୋଇଥିଲେ ଛାତ୍ରମାନଙ୍କଦ୍ୱାରା ତାହା ସଂଶୋଧନ କରାଇ ନେବାର ଉଚିତ ।

ପ୍ରତିଶବ୍ଦରେ ପ୍ରଭେଦ ବୁଝାଇବାର ବ୍ୟାକରଣ କାର୍ଯ୍ୟ । ଏ ଗ୍ରନ୍ଥରେ ଉକ୍ତ ପ୍ରସଙ୍ଗର ଉଲ୍ଲେଖ କେହି କେହି ଆପତ୍ତି କରି ପାରନ୍ତି । ମାତ୍ର ଉତ୍କଳ ଭାଷାରେ ସେପରି ପୂର୍ଣ୍ଣାଙ୍ଗ ବ୍ୟାକରଣ ଅଦ୍ୟାପି ରଚିତ ହୋଇ ନାହିଁ । ଏଣୁକରି ଆମ୍ଭେମାନେ ସଂକ୍ଷିପ୍ତ ବିଷୟକୁ ଭାଷାଶିକ୍ଷା ପକ୍ଷରେ ଅତ୍ୟନ୍ତ ଉପଯୋଗୀ ଜାଣି ଏଥିରେ ତାହା ସନ୍ନିବିଷ୍ଟ କଲୁଁ ।

ଆଜ୍ଞା, ଅନୁମତି—ଆଜ୍ଞା ପୂର୍ବପ୍ରାର୍ଥନାର ଅପେକ୍ଷା କରେ ନାହିଁ ।
ଅନୁମତି ପୂର୍ବପ୍ରାର୍ଥନାର ଅପେକ୍ଷା କରେ ।

ସ୍ନେହ ପ୍ରେମ, ଶ୍ରଦ୍ଧା—ପ୍ରେମ ସ୍ନେହ ଅପେକ୍ଷା ଗାଢ଼ତର ।

ପିତାଙ୍କର ପୁତ୍ରଠାରେ ସ୍ନେହ ହୁଏ; ସ୍ତ୍ରୀ ଏବଂ ସ୍ୱାମୀ ମଧ୍ୟରେ ପ୍ରେମ ହେବାର ସମ୍ଭବ । ସ୍ନେହ ବିଚ୍ଛେଦ ସହି ପାରେ, ପ୍ରେମ ବିଚ୍ଛେଦ ସହି ନ ପାରେ । ଶ୍ରଦ୍ଧା ପ୍ରାୟ ଆପଣାଠାରୁ ଉଚ୍ଚ ବ୍ୟକ୍ତିଙ୍କଠାରେ ଅଥବା ଗୁରୁଜନଙ୍କଠାରେ ହୁଏ । ଶ୍ରଦ୍ଧା କାର୍ଯ୍ୟ ବିଶେଷକୁ ମଧ୍ୟବର୍ତ୍ତି କରିପାରେ ଯଥା ଅମୁକେର କାର୍ଯ୍ୟରେ ତାହାଙ୍କର ଶ୍ରଦ୍ଧା ନାହିଁ । ଏମନ୍ତ ସ୍ଥଳରେ "ସ୍ନେହ ନାହିଁ" ଅଥବା "ପ୍ରେମ ନାହିଁ" କେହି ଏମନ୍ତ ପ୍ରୟୋଗ କରନ୍ତି ନାହିଁ ।

ଚଞ୍ଚଳ ଚପଳ—ସ୍ୱଭାବରେ ଚଞ୍ଚଳ ଭଲ ଅଭିପ୍ରାୟରେ ଏବଂ ଚପଳ ମନ୍ଦ ଅଭିପ୍ରାୟରେ ବ୍ୟବହୃତ ହୁଏ ।

ଆଶ୍ଚର୍ଯ୍ୟ ବିସ୍ମୟ—ଆଶ୍ଚର୍ଯ୍ୟରେ ଦୁଃଖିତ ମିଶ୍ରିତ ହେବାରୁ ଯେ ତାହାକୁ ବିସ୍ମୟ ବୋଲି ।

ଦୋଷ, ଅପରାଧ, ପାପ—ସୁରାପାନ ଗୋଟିଏ ଦୋଷ, ଅପରାଧର ଦଣ୍ଡ ରଜା କରି ପାରନ୍ତି । ମାତ୍ର ପାପର ଦଣ୍ଡ ଈଶ୍ୱରଙ୍କର ବିହିତ ହୁଏ ।

ଉଦ୍ବେଗ, ଉତ୍କଣ୍ଠା—ଉଦ୍ବେଗରେ ଆକୁଳତାର ଆଧିକ୍ୟ ଥାଏ । ଉତ୍କଣ୍ଠାରେ ଅଧୈର୍ଯ୍ୟର ଆଧିକ୍ୟ ଥାଏ ।

ବିଳାପ, ବେଦନା—ବିଳାପ ବାହ୍ୟକ । ବେଦନା ବାହ୍ୟକ ମୂକ ଉଭୟ ହୋଇ ପାରେ ।

ଦୟା, କୃପା, ଅନୁକମ୍ପା—ଦୟା ପ୍ରାୟ ଅଧିକାଂଶ ସ୍ଥଳରେ ମନୁଷ୍ୟପ୍ରତି ପ୍ରୟୋଗ ହୁଏ । ଯଥା, ଆମ୍ଭଠାରେ ତାହାଙ୍କର ଅଦୌ ଦୟା ନାହିଁ । କୃପା ସଚରାଚର ଦେବତାଙ୍କ ପ୍ରତି ପ୍ରୟୋଗ ହୁଏ । ଯଥା ପ୍ରଭୁଙ୍କର କୃପା ହେଲା । କୌଣସି ଲୋକର ଦୁଃଖ ଦେଖି ଅନ୍ୟର ଦୟା ହୋଇପାରେ । ଦୟା ବୋଇଲେ, ପରଦୁଃଖହରଣେଚ୍ଛା । କୌଣସି ଇଷ୍ଟସିଦ୍ଧି ଉଦ୍ଦେଶ୍ୟରେ କେହି ତପସ୍ୟା କରୁ ଅଛନ୍ତି, ଦେବତାଙ୍କର କୃପା ହେଲେ ସେହି ଇଷ୍ଟ-

ସିଦ୍ଧି ହୁଏ । ଅନୁକମ୍ପା ଦୟାଠାରୁ ଅଧିକତର ପ୍ରଗାଢ଼ । ଅନୁକମ୍ପା—ଅର୍ଥାତ୍ ପଶ୍ଚାତ୍ କମ୍ପିବା—ଅର୍ଥାତ୍ କେହି କୌଣସି ବିପଦରେ ପଡ଼ି (ବିପତ୍ତିରେ) କମ୍ପିତ ହେଉଅଛି, ତାହାର କମ୍ପ ଦେଖି ସ୍ୱୟଂ କମ୍ପିବାର ସୁତରାଂ ପରର ଦୁଃଖରେ ସମଦୁଃଖିତ ହୋଇ ତାହାକୁ ଅନୁକମ୍ପ କରିବାର ଯେ ବୋ ଅନୁକମ୍ପା ।

ନିନ୍ଦା, ଗ୍ଳାନି—ଗ୍ଳାନିବୋଲନ୍ତେ ମିଥ୍ୟା ନିନ୍ଦା ।

ଆଶ୍ଚର୍ଯ୍ୟ, ଅଦ୍ଭୁତ—ଅଦ୍ଭୁତ ଆଶ୍ଚର୍ଯ୍ୟ ଅପେକ୍ଷା ଗୁରୁତର । ଅଦ୍ଭୁତ ଘଟଣା ଦେଖିଲେ ଲୋକେ ଆଶ୍ଚର୍ଯ୍ୟାନ୍ୱିତ ଏବଂ ସ୍ତବ୍ଧ ହୁଅନ୍ତି । ଆଶ୍ଚର୍ଯ୍ୟ ଏହି ଶବ୍ଦଟି ସାମାନ୍ୟ ବିଷୟ ପ୍ରତି ପ୍ରୟୋଗ ହୋଇପାରେ । ତୁମ୍ଭେ କୌଣସି ଲୋକକୁ ଅତ୍ୟନ୍ତ ବିଶ୍ୱସ୍ତ ଜାଣିଥିଲ; ସେ ହଠାତ୍ ତୁମ୍ଭଠାରେ ପ୍ରତାରଣା କଲା । ତାହାର ପ୍ରତାରଣା ଦେଖି ତୁମ୍ଭେ ଆଶ୍ଚର୍ଯ୍ୟାନ୍ୱିତ ହୋଇପାର । ତାହାର ପ୍ରତାରଣା ଆଶ୍ଚର୍ଯ୍ୟ ଜନକ ସତ୍ୟ ମାତ୍ର ଅଦ୍ଭୁତ ନୁହେ । କୌଣସି ବୀରର ଯୁଦ୍ଧ ଦେଖି ତୁମ୍ଭେ ସ୍ତବ୍ଧ ଏବଂ ଆଶ୍ଚର୍ଯ୍ୟାନ୍ୱିତ ହେବ । ଯେହେତୁ ଯୁଦ୍ଧ ଅଦ୍ଭୁତ ଅଟେ ।

ଅସ୍ତ୍ର, ଶସ୍ତ୍ର—ଯାହା କ୍ଷେପଣ କରି ପ୍ରହାର କରାଯାଏ ତାହାକୁ ଅସ୍ତ୍ର ବୋଲି । ଯାହା ହସ୍ତରେ ଧରି ପ୍ରହାର କରାଯାଏ ତାହାକୁ ଶସ୍ତ୍ର ବୋଲି । ବାଣ ଅସ୍ତ୍ର । ଖଡ୍ଗ ଶସ୍ତ୍ର । ଶସ୍ତ୍ରବୃଷ୍ଟି କେହି ଏପରି ପ୍ରୟୋଗ କରନ୍ତି ନାହିଁ । ଅନେକ ସଂସ୍କୃତ କବି ଛନ୍ଦଅନୁରୋଧରେ ହେଉ ଅଥବା ଅନ୍ୟ କାରଣରୁ ହେଉ ଅସ୍ତ୍ର ସ୍ଥଳରେ ଶସ୍ତ୍ର ଏବଂ ଶସ୍ତ୍ର ସ୍ଥଳରେ ଅସ୍ତ୍ର ବ୍ୟବହାର କରି ଅଛନ୍ତି ।

ଆଶ୍ରୟ, ଅବଲମ୍ବନ—ଆଶ୍ରୟ—ଯେ ସମ୍ପୂର୍ଣ୍ଣ ରୂପରେ ରକ୍ଷା କରେ । ଅବଲମ୍ବନ—ଯାହା ଉପରେ ନିର୍ଭର କରାଯାଏ । ରାମଚନ୍ଦ୍ର ପଞ୍ଚବଟୀରେ ମୁନିମାନଙ୍କର ଆଶ୍ରୟ ଥିଲେ, ମାତ୍ର ଲଙ୍କା ଯୁଦ୍ଧରେ ବାନର ସୈନ୍ୟର ଅବଲମ୍ବନ ଥିଲେ ।

ପ୍ରଶଂସା, ସ୍ତବ—ପ୍ରଶଂସାର ଆଧିକ୍ୟ ଯେ ସେ ସ୍ତବ । ସ୍ତବରେ ଅନେକ ମିଥ୍ୟା ଥିବାର ସମ୍ଭାବନା । ପ୍ରଶଂସା ପ୍ରଭୁ ଭୃତ୍ୟକୁ ଭୃତ୍ୟ ପ୍ରଭୁଙ୍କୁ କରି ପାରନ୍ତି । ମାତ୍ର ସ୍ତବ ଯେ କରେ ସେ ଆପଣାକୁ ନ୍ୟୂନ କରି ଜଣାଏ । ପ୍ରଶଂସା ପ୍ରତ୍ୟକ୍ଷ ପରୋକ୍ଷ ଉଭୟ ସ୍ଥଳରେ ହୋଇ ପାରେ ସ୍ତବ ସାକ୍ଷାତରେ ହୁଏ ।

ଆବିଷ୍କରଣ, ଉଦ୍ଭାବନ—ଯାହା ପୂର୍ବରେ ଥିଲା ଅଥଚ କେହି ଜାଣି ନଥିଲେ ତାହା ପ୍ରକାଶ କରିବାର ଯେ ସେ ଆବିଷ୍କ୍ରିୟା । ଯାହା ପୂର୍ବରେ ନଥିଲା ଏପରି କୌଣସି ପଦାର୍ଥ ରଚନା କରିବାର ଯେ ସେ ଉଦ୍ଭାବନ ।

ବିଚାର, ବିବେଚନା—ଲୋକେ ମନେ୨ ବିଚାର କରନ୍ତି, ଅନ୍ୟ ବ୍ୟକ୍ତି ସଙ୍ଗରେ ମଧ୍ୟ ବିଚାର କରନ୍ତି । ମାତ୍ର ବିବେଚନା ଅନ୍ୟର ଅପେକ୍ଷା ନରଖେ । ପାଞ୍ଚଜଣ ବସି ବିଚାର କରି ଯାହା କହିବେ ସେଥିରେ ଆମ୍ଭର ଆପତ୍ତି ନାହିଁ । ପାଞ୍ଚଜଣ ବିବେଚନା କରି ଯାହା କହିବେ ସେଥିରେ ଆମ୍ଭର ଆପତ୍ତି ନାହିଁ । ଏରୂପ ବାକ୍ୟର ଅର୍ଥରେ ପ୍ରଭେଦ ଏହି ଯେ ପ୍ରଥମ ସ୍ଥଳରେ ପାଞ୍ଚଜଣ ପରସ୍ପର ବିଚାର କରିବେ । ଦ୍ୱିତୀୟ ସ୍ଥଳରେ ପ୍ରତ୍ୟେକ ବ୍ୟକ୍ତି ମନେ୨ ବିଚାର କରିବେ ।

ସଂସାର, ପୃଥିବୀ—ସଂସାର ବୋଲନ୍ତେ ଜଗତ । ସମୁଦାୟ ବ୍ରହ୍ମାଣ୍ଡକୁ ସଂସାର ବୋଲାଯାଇ ପାରେ । ଆମ୍ଭେମାନେ ଯେଉଁ ଗୋଲକରେ ବାସକରୁଁ ତାହା ପୃଥିବୀ ।

ଧୀର, ସ୍ଥିର—ଚଞ୍ଚଳର ବିପରୀତ ଯେ ସେ ଧୀର । ସ୍ଥିର ବୋଲନ୍ତେ ଅଟଳ । ଯଥା, ନଦୀ ଧୀର ଗତିରେ ଯାଉଅଛି । ସରୋବରର ଜଳ ସ୍ଥିର ଅଛି । ସ୍ଥିର ପବନ ଏପରି ପ୍ରୟୋଗ କେହି କରନ୍ତି ନାହିଁ । ଧୀରପବନ ବୋଲନ୍ତି । ସ୍ୱଳ୍ପ ପ୍ରୟୋଗରେ ଏରୂପ ଶବ୍ଦ ପ୍ରାୟ ସମାନ ଅର୍ଥରେ ପ୍ରୟୋଗ ହୁଅନ୍ତି । ତଥାଚ କୌଣସି୨ ସ୍ଥଳରେ ପ୍ରଭେଦ ଲକ୍ଷିତ ହୁଏ । ଯଥା,

ବିଷ୍ଣୁଦେବ ସ୍ତ୍ରିରପ୍ରତିଜ୍ଞ ଏବଂ ଧୀରମତି ଥିଲେ । ଏଠାରେ ଧୀର ସ୍ଥଳରେ ସ୍ଥିର ପ୍ରୟୋଗ କଲେ ଦୃଷ୍ୟ ହେବନାହିଁ । ମାତ୍ର ସ୍ଥିର ସ୍ଥଳରେ ଧୀର ପ୍ରୟୋଗ କଲେ ଦୃଷ୍ୟ ହେବ ।

ଅଧିକ, ଅନେକ—ଅଧିକ ସାପେକ୍ଷ ଅଟେ । ଯଥା, ତାହାଙ୍କ ଘରେ ଅଧିକ ଟଙ୍କା ଅଛି । ଅର୍ଥାତ୍ ଅନ୍ୟ କାହାର ଘରଠାରୁ ବେଶି । ଅନେକ ସାପେକ୍ଷ ନୁହେ । ଯଥା ତାହାଙ୍କ ଘରେ ଅନେକ ଟଙ୍କା ଅଛି । ଏଠାରେ କେବଳ ଅତିଶଯ୍ୟ ସୂଚିତ ହେଲା ମାତ୍ର ଅପେକ୍ଷା ନରହିଲା ।

ସେନା, ସୈନ୍ୟ—ସେନା ସୈନ୍ୟର ଦଳ ହସ୍ତୀ ରଥ ପ୍ରଭୃତି ସମୁଦାୟକୁ ବୁଝାଏ । ସୈନ୍ୟ ସେଥିର ଅନ୍ତର୍ଗତ ଜଣେ ଯୋଦ୍ଧା ।

ପର୍ଯ୍ୟଟନ, ଭ୍ରମଣ—ଭ୍ରମଣ ଅପେକ୍ଷା ପର୍ଯ୍ୟଟନ ବ୍ୟାପକ ।

ପୁଷ୍କରିଣୀ, ଦୀର୍ଘିକା—ବୃହତ୍ ପୁଷ୍କରିଣୀକୁ ଦୀର୍ଘିକା ବୋଲନ୍ତି

ସ୍ମୃତି, ମତି ବୁଦ୍ଧି, ପ୍ରଜ୍ଞା, ପ୍ରତିଭା—ପୂର୍ବବିଷୟ ଯାହାଦ୍ୱାରା ସ୍ମରଣ ହୁଏ ତାହାକୁ ସ୍ମୃତି କହନ୍ତି । ଯାହାଦ୍ୱାରା ଭାବି ବିଷୟର ଅନୁମାନ ହୁଏ ତାହାକୁ ମତି କହନ୍ତି । ଉପସ୍ଥିତ ବିଷୟ ଯାହାଦ୍ୱାରା ଜଣାଯାଏ ତାହାକୁ ବୁଦ୍ଧି ବୋଲି । ଭୂତ, ବର୍ତ୍ତମାନ, ଭବିଷ୍ୟତ୍ ତିନକାଳର କଥା ଯାହାଦ୍ୱାରା ବୋଧହୁଏ ତାହା ପ୍ରଜ୍ଞା । ପ୍ରତିଭା ବୋଲନ୍ତେ ନବନବୋନ୍ମେଷଶାଳିନୀ ପ୍ରଜ୍ଞା । ପ୍ରତିଭାର ଅପର ଅର୍ଥ ପ୍ରତ୍ୟୁତ୍ପନ୍ନମତିତ୍ୱ ଯଥା ସେ ଅପ୍ରତିଭ ହୋଇଗଲେ ।

ଶାସ୍ତ୍ର, ବିଦ୍ୟା, ଭାଷା—ଯଦିଚ ଏଗୁଡ଼ି ପ୍ରତିଶବ୍ଦ ନୁହନ୍ତି ତଥାଚ ଲୋକେ ଅସ୍ଥାନରେ ଏମାନଙ୍କୁ ପ୍ରୟୋଗ କରନ୍ତି ବୋଲି ପ୍ରଭେଦ ଦର୍ଶିତ ହେଉଅଛି । ଦର୍ଶନ ଅର୍ଥାତ୍ ପଦାର୍ଥ ନିରୂପଣ ବିଷୟକ ବିଚାର ଯହିଁରେ ଥାଏ ତାହାକୁ ଶାସ୍ତ୍ର ବୋଲି । ଯଥା ଗଣିତ ଶାସ୍ତ୍ର, ନ୍ୟାୟ ଶାସ୍ତ୍ର ଇତ୍ୟାଦି । ସେହି ଶାସ୍ତ୍ରମାନଙ୍କର ଆଲୋଚନା ଦ୍ୱାରା ବିଦ୍ୟାଲାଭ ହୁଏ । ଭାଷା ଗୋଟିଏ ପୃଥକ୍

କଥା, ଯେମନ୍ତ କି ଓଡ଼ିଆ ଭାଷା, ବଙ୍ଗଳା ଭାଷା, ଇଂରେଜି ଭାଷା । ଲୋକେ ସଚରାଚର କହନ୍ତି "ଅମୁକେ ଲୋକ ଭଲ ବିଦ୍ୟା--ଜାଣେ--ଇଂରେଜି ଫାରସି, ଓଡ଼ିଆ, ବଙ୍ଗଳା" । ଏମନ୍ତ ସ୍ଥଳମାନଙ୍କରେ ଭାଷା ଏହି ଶବ୍ଦ ପ୍ରୟୋଗ କରିବାର ଉଚିତ ।

ପ୍ରଣାମ, ନମସ୍କାର—ଯଦିଚ ପ୍ରକୃତରେ ଏ ଉଭୟ ମଧ୍ୟରେ କୌଣସି ପ୍ରଭେଦ ନାହିଁ ତଥାଚ ବ୍ୟବହାରଗତ ଭିନ୍ନତା ଦେଖାଯାଏ । କେହି କହନ୍ତି ପ୍ର ଏହି ଉପସର୍ଗ ଥିବାରୁ ପ୍ରଣାମ ଶବ୍ଦ ଅଧିକରେ ବିନୟସୂଚକ ଅଟେ । ବ୍ୟବହାରରେ ପ୍ରାୟ ପୂଜ୍ୟ ବ୍ୟକ୍ତିଙ୍କଠାରେ ପ୍ରଣାମ ଏବଂ ସମାନସ୍ଥଳ ବ୍ୟକ୍ତିଙ୍କ ପ୍ରତି ନମସ୍କାର ପ୍ରୟୋଗ ହେବାର ଦେଖାଯାଏ ।

ମଧୁର, ମିଷ୍ଟ—ସାଧାରଣତଃ ଜଡ଼ପଦାର୍ଥ ପ୍ରତି ପ୍ରୟୋଗ ହୁଏ ଯଥା ମିଷ୍ଟାନ୍ନ । ମଧୁର ସାଧାରଣତଃ ସୂକ୍ଷ୍ମପଦାର୍ଥ ପ୍ରତି ପ୍ରୟୋଗ ହୁଏ ଯଥା ମଧୁର ରଚନା, ମଧୁର, ମୂର୍ତ୍ତି, ମଧୁର ବାକ୍ୟ । ମିଷ୍ଟ ବାକ୍ୟ ପ୍ରଭୃତି ଲୋକେ ପ୍ରୟୋଗ କରନ୍ତି ମାତ୍ର ଅଧୁନାତନ ପୁସ୍ତକରେ ମଧୁର ଶବ୍ଦର ପ୍ରୟୋଗ ଅଧିକାଂଶ ସ୍ଥଳରେ ଦେଖାଯାଏ ।

ରୋଗ, ପୀଡ଼ା—ପୀଡ଼ା ବ୍ୟାପକ, ରୋଗବ୍ୟାପ୍ୟ ।

ନଦ, ନଦୀ—ସ୍ରୋତର ନାମ ପୁରୁଷବାଚକ ହେଲେ ତାହାକୁ ନଦ ବୋଲନ୍ତି ଯଥା ଦାମୋଦର ନଦ, ଶୋଣନଦ । ସ୍ତ୍ରୀବାଚକ ହେଲେ ତାହାକୁ ନଦୀ ବୋଲନ୍ତି । ଯଥା ବୈତରଣୀ ବ୍ରାହ୍ମଣୀ ।

ଯଶଃ କୀର୍ତ୍ତି—"ଦାନାଦିପ୍ରଭବା କୀର୍ତ୍ତିଃ ଶୌର୍ଯ୍ୟାଦି ପ୍ରଭବଂ ଯଶଃ"

ଦାନାଦିକଲେ କୀର୍ତ୍ତି ହୁଏ । କ୍ଷମତା ପ୍ରକାଶ କଲେ ଯଶ ହୁଏ । କୌଣସି ବ୍ୟକ୍ତି ଅନେକ ବ୍ୟୟରେ ଗୋଟିଏ ବୃହତ୍ ପୁଷ୍କରିଣୀ ଖୋଳାଇ ହେଲେ । ତାହାଙ୍କୁ କୀର୍ତ୍ତିମାନ ବୋଲାଯାଇପାରେ । କୌଣସି ବୀରପୁରୁଷ ଅସାଧାରଣ ରଣ କୌଶଳଦ୍ୱାରା ଜୟଲାଭ

କଲେ । ସେ ଯଶସ୍ୱୀ ହେଲେ ।

ବୃଦ୍ଧ, ବର୍ଷୀୟାନ୍—୭୦ ବର୍ଷରୁ ଅଧିକ ହେଲେ ବୃଦ୍ଧ, ୯୦ ବର୍ଷରୁ ଅଧିକ ହେଲେ ବର୍ଷୀୟାନ୍ ।

ଭୟ, ଶଙ୍କା, ଆତଙ୍କ—ଶଙ୍କା ଅନିଷ୍ଟପ୍ରାପ୍ତିର ଅର୍ଥାତ୍ ସନ୍ଦେହ ପୂର୍ଣ୍ଣ । ଭୟ ନିଷ୍ଟପ୍ରାପ୍ତିର । ଅତଏବ ଭୟ ଯେ ସେ ଆତଙ୍କ ।

ଚିହ୍ନ, ଲକ୍ଷଣ—ଲକ୍ଷଣ ପ୍ରାକୃତିକ ଅର୍ଥାତ୍ ଅକୃତ୍ରିମ । ଚିହ୍ନ ପ୍ରାକୃତିକ, କୃତ୍ରିମ ଉଭୟ ସ୍ଥଳରେ ପ୍ରୟୋଗ ହୁଏ । ମାତ୍ର ଶେଷୋକ୍ତ ପ୍ରକାର ପ୍ରୟୋଗ ଅଧିକ ଦେଖାଯାଏ ।

ନକ୍ଷତ୍ର, ତାରା—ଅଶ୍ୱିନୀ ଆଦିକରି ୨୭ ନକ୍ଷତ୍ର ଅଛନ୍ତି । ଅବଶିଷ୍ଟ ଯେମାନେ ସେମାନେ ତାରା ।

ନିଦ୍ରା, ତନ୍ଦ୍ରା—ଅଳ୍ପ ନିଦ୍ରାକୁ ତନ୍ଦ୍ରା ବୋଲି ।

ଅତିଶୟ, ନିରତିଶୟ—ନିରତିଶୟ ବୋଲନ୍ତି ଯାହାଠାରୁ ଅଧିକ ନାହିଁ ।

କ୍ଷୁଦ୍ର, ଅଳ୍ପ—କ୍ଷୁଦ୍ର ଅଳ୍ପତା ସୂଚନା କରେ । ଅଳ୍ପପରିମାଣ ସୂଚନା କରେ ଯଥା କ୍ଷୁଦ୍ରତରୁ, ଅଳ୍ପ ଜଳ । ସୂକ୍ଷ୍ମ ପ୍ରୟୋଗରେ ଏ ଉଭୟ ଶବ୍ଦ ପ୍ରାୟ ସମାନ ଅର୍ଥରେ ବ୍ୟବହୃତ ହୁଅନ୍ତି । ଯଥା କ୍ଷୁଦ୍ରଲୋକ, ଅଳ୍ପଲୋକ । ମାତ୍ର ଏମନ୍ତ ସ୍ଥଳମାନଙ୍କରେ ଅଳ୍ପଶବ୍ଦ ଅଧିକତର ନୀଚତା ସୂଚକ ।

ଆଶା, ଭରସା—ଆଶା ସଫଳ ଅଥବା ବିଫଳ ହୋଇପାରେ ଭରସା ପ୍ରାୟ ନିଶ୍ଚିତ ଅଥବା ନିଶ୍ଚିତାସନ୍ନ ସ୍ଥଳମାନଙ୍କରେ ପ୍ରୟୋଗ ହୁଏ ।

ବୃହତ୍, ପ୍ରକାଣ୍ଡ—ବୃହତ୍ ଶବ୍ଦଠାରୁ ପ୍ରକାଣ୍ଡ ଶବ୍ଦ ଆକାରର ଅଧିକତର ବିସ୍ତୃତି ସୂଚନା କରେ । ଭାଷାରେ ଏହିପରି ବ୍ୟବହାର ଦେଖାଯାଏ ।

ଆଚାର, ବ୍ୟବହାର—ଆଚାର ଅନ୍ୟର ଅପେକ୍ଷା ନ ରଖେ ଯଥା ତାହାଙ୍କର ଆଚାର ମନ୍ଦ । ମାତ୍ର ବ୍ୟବହାର ଅନ୍ୟର ଅପେକ୍ଷା ରଖେ ଯଥା ସେ ମୋ ପ୍ରତି ଯେମନ୍ତ ବ୍ୟବହାର କଲେ

ତାହା ଅତ୍ୟନ୍ତ ଅନୁଚିତ ।

ଦୁଃଖ, ଶୋକ—ଦୁଃଖ ବ୍ୟାପକ, ଶୋକ ବ୍ୟାପ୍ୟ । ଶୋକ ଏକ ପ୍ରକାର ଦୁଃଖ ଅଟେ । ଅର୍ଥନାଶ ହେଲେ ଦୁଃଖ ହୁଏ । ପୁତ୍ରର ମୃତ୍ୟୁରେ ଲୋକଙ୍କର ଶୋକ ଉପସ୍ଥିତ ହୁଏ ।

ଅର୍ଜ୍ଜନ, ପ୍ରାପ୍ତି—ଅର୍ଜ୍ଜନ ଉଦ୍ୟୋଗ ସୂଚନା କରେ । ପ୍ରାପ୍ତି ତେମନ୍ତ କିଛି ସୂଚନା କରେ ନାହିଁ ।

ପର୍ଯ୍ୟାପ୍ତ, ଅପର୍ଯ୍ୟାପ୍ତ—ପର୍ଯ୍ୟାପ୍ତ ବୋଲନ୍ତେ ପ୍ରଚୁର । ଅପର୍ଯ୍ୟାପ୍ତ, ଅତ୍ୟନ୍ତ ଅଧିକ । ପର୍ଯ୍ୟାପ୍ତ ସାପେକ୍ଷ ଅଟେ ।

ଦେହ, ଅଙ୍ଗ—ସମୁଦାୟ ଶରୀରକୁ ଦେହ କହନ୍ତି, ହସ୍ତ ପଦ ପ୍ରଭୃତିକୁ ଅଙ୍ଗ ବୋଲନ୍ତି ।

ଶବ୍ଦ, ନାଦ—ନାଦ ବ୍ୟାପକ, ଶବ୍ଦ ବ୍ୟାପ୍ୟ । ଶବ୍ଦ ବର୍ଣ୍ଣାତ୍ମକ ।

ଦ୍ୱନ୍ଦ୍ୱ, କଳହ—ଦୁଇଜଣ ମଧ୍ୟରେ ଯେଉଁ କଳହ ତାହାକୁ ଦ୍ୱନ୍ଦ୍ୱ ବୋଲି ।

ଅପତ୍ୟ, ସନ୍ତାନ, ପୁତ୍ର—ଅପତ୍ୟ ଆଉ ସନ୍ତାନ ଏହି ଦୁଇ ଶବ୍ଦ ସମାନାର୍ଥକ । ଅପତ୍ୟ ଅର୍ଥାତ୍ ଯାହାଦ୍ୱାରା ବଂଶର ପତନ ହୁଏ ନାହିଁ । ସନ୍ତାନ ଅର୍ଥାତ୍ ଯାହାଦ୍ୱାରା ବଂଶ ବୃଦ୍ଧି ହୁଏ । ଅପତ୍ୟ, ସନ୍ତାନ ପୁତ୍ର କନ୍ୟା ଉଭୟଙ୍କୁ ବୋଲି ଯାଇପାରେ ।

ହିଂସା, ଈର୍ଷା—ହିଂସା ବୋଲନ୍ତେ ଅନିଷ୍ଟ କରିବାର ଇଚ୍ଛା । ଶତ୍ରୁକୁ ଶତ୍ରୁ ହିଂସା କରେ । ଈର୍ଷା ପ୍ରାୟ ସମାନସ୍ଥ ବ୍ୟକ୍ତି ମଧ୍ୟରେ ହୁଏ । ସପତ୍ନୀର ସୁଖ ଦେଖି ସପତ୍ନୀର ଈର୍ଷା ଜାତ ହୁଏ ।

ପ୍ରଣୟ, ପରିଣୟ—ପ୍ରଣୟ ବୋଲନ୍ତେ ପ୍ରୀତି, ପରିଣୟ ବିବାହ ।

ସ୍ମିତ, ହାସ୍ୟ—ମନ୍ଦହାସ୍ୟକୁ ସ୍ମିତ ବୋଲି ।

ଅହଂକାର, ଅଭିମାନ—ଅହଂକୃତ ବ୍ୟକ୍ତି ଆପଣାକୁ

ବଡ଼ କରି ଜାଣେ । ଅଭିମାନୀ ଲୋକ ଅଳ୍ପ ମାନହାନି ସହ୍ୟ କରେ ନାହିଁ ।

ଜ୍ଞାନ, ବୁଦ୍ଧି—କୌଣସି ବିଷୟ ଜାଣିବାର ଯେ ତାହାକୁ ଜ୍ଞାନ ବୋଲି । ବୁଦ୍ଧି ମନର ଗୋଟିଏ ବୃତ୍ତି । ବୁଦ୍ଧି ଦ୍ୱାରା ଲୋକେ ବିଚାର କରି ପାରନ୍ତି ।

ଜନ, ମନୁଷ୍ୟ—ଜନ ଉଭୟ ଲିଙ୍ଗରେ ବ୍ୟବହୃତ ହୁଏ । ମନୁଷ୍ୟ-ପୁଂଲିଙ୍ଗ ।

ଆନନ୍ଦ, ସନ୍ତୋଷ—ଆନନ୍ଦ ସନ୍ତୋଷ ଅପେକ୍ଷା ଅଧିକ-ତର ଉତ୍କଟ । କିନ୍ତୁ ସନ୍ତୋଷ ଆନନ୍ଦ ଅପେକ୍ଷା ଅଧିକତର ସ୍ଥାୟୀ । ଯଥା ସନ୍ତୁଷ୍ଟସ୍ୟ ସଦା ସୁଖଂ ।

ଆୟୁ, ବୟକ୍ରମ—କୌଣସି ବ୍ୟକ୍ତି ମଲା ଉତ୍ତାରେ ଆମ୍ଭେମାନେ କହିପାରୁଁ ଅମୁକେକ ବ୍ୟକ୍ତି ୬୦ ବର୍ଷ ବୟକ୍ରମରେ ମଲେ ଅଥବା ଅମୁକେକ ବ୍ୟକ୍ତିଙ୍କର ଆୟୁ ୬୦ ବର୍ଷ ଥିଲା । ଯେତେ ବର୍ଷ ବଞ୍ଚିବାର ଲୋକର ଅଦୃଷ୍ଟରେ ଥାଏ ତାହାକୁ ଆୟୁ କହନ୍ତି । ଅମୁକେକ ଲୋକର ବୟକ୍ରମ କେତେ ଏହାର ଅର୍ଥ ଏହି ଯେ ତାହା ଜନ୍ମଦିନଠାରୁ ଆଜିଯାଏ କେତେ ବର୍ଷ ହେଲା ।

ପରିହାସ, ଉପହାସ—ପରିହାସରେ ରସିକତାର ଅଧିକ୍ୟ ଥାଏ ଉପହାସରେ ତାଚ୍ଛିଲ୍ୟର ଅଧିକ୍ୟ ଥାଏ । ପରିହାସ ମଧୁର ଲାଗେ । ଉପହାସ ବାଧେ ।

ଦଗ, ବଦଗ—ଦଗ ବୋଲନ୍ତେ ଘରଦଗ, ବଦଗ ଘର କୋଣ ।

ତରୁ , ଗୁଳ୍ମ—ତରୁ ବୃହତ୍ , ଗୁଳ୍ମ କ୍ଷୁଦ୍ର ।

ପଟୁ , କୁଶଳ—ପଟୁତା ଅପେକ୍ଷା କୌଶଳ ଅଧିକତର ଗୌରବ ସୂଚକ । ପଟୁତାଦ୍ୱାରା ଲଘୁ ହସ୍ତତାର ଆଧିକ୍ୟ ସୂଚିତ ହୁଏ । କୌଶଳ ପୂର୍ବାପର ବିବେଚନାର ଅଧିକ୍ୟ ସୂଚନା କରେ ।

ନିରୂପଣ, ନିରାକରଣ—ଏ ଦୁଇ ଶବ୍ଦର ଅର୍ଥରେ ଅନେକ ପ୍ରଭେଦ । ନିରୂପଣ ବୋଲିଲେ ନିର୍ଣ୍ଣୟ କରିବାର । ନିରାକରଣର ଅର୍ଥ ବନ୍ଦ ଅର୍ଥାତ୍ ନିବାରଣ କରିବାର ଲୋକେ ନ ଜାଣି ଏ ଦୁଇ ଶବ୍ଦକୁ ଏକାର୍ଥରେ ବ୍ୟବହାର କରନ୍ତି ।

ଅସମ୍ଭବ, ଅସାଧ୍ୟ—ଯାହା ହୋଇ ନ ପାରିବ ତାହାକୁ ଅସମ୍ଭବ ବୋଲି । ଯାହା କରି ହେବ ନାହିଁ ତାହାକୁ ଅସାଧ୍ୟ ବୋଲି । ସୂର୍ଯ୍ୟ ପଶ୍ଚିମରେ ଉଦୟ ହେବାର ଅସମ୍ଭବ । ମୃତ-ବ୍ୟକ୍ତିକୁ ବଞ୍ଚାଇବାର ମନୁଷ୍ୟର ଅସାଧ୍ୟ ।

ନିବେଦନ, ବିଜ୍ଞାପନ—ପ୍ରକୃତ ଅର୍ଥ ଦେଖିଲେ ଏ ଉଭୟ ସମାନ କିନ୍ତୁ ବ୍ୟବହାରରେ କିଞ୍ଚିତ ପ୍ରଭେଦ ଦେଖାଯାଏ । ଅଧୀନ ବ୍ୟକ୍ତି ନିବେଦନ କରେ । ପ୍ରଭୁ ବିଜ୍ଞାପନ କରନ୍ତି ।

କୁଟିଳ, କ୍ରୂର—ଯେଉଁ ଲୋକ ଅତ୍ୟନ୍ତ ନିଷ୍ଠୁର କ୍ରୋଧକୁ ମନ ମଧ୍ୟରେ ପୋଷି ରଖେ ତାହାକୁ କ୍ରୂର ବୋଲି । ଯେଉଁ ବ୍ୟକ୍ତି ପରର ଅନିଷ୍ଟ ସାଧନ ନିମନ୍ତେ ଷଡ଼ଯନ୍ତ୍ର କରେ ସେ କୁଟିଳ ।

ଅନୁରକ୍ତ, ଅସକ୍ତ—ଅନୁରାଗ ଅସକ୍ତି ଅପେକ୍ଷା ଗାଢ଼ତର । ଅନୁରକ୍ତ ଏହି ଶବ୍ଦଟି ସାଧାରଣତଃ ଭଲ ଉଦ୍ଦେଶ୍ୟରେ ବ୍ୟବହୃତ ହୁଏ । ଅସକ୍ତ ସାଧାରଣତଃ ମନ୍ଦ ଉଦ୍ଦେଶ୍ୟରେ ବ୍ୟବହୃତ ହୁଏ । ଯଥା ଅନେକେର ଲୋକ ସୁରାପାନରେ ଅସକ୍ତ । ସୁରାପାନରେ ଅନୁରକ୍ତ କେହି ଏପରି ପ୍ରୟୋଗ କରନ୍ତି ନାହିଁ ।

ଗ୍ରାସ, ଆହାର—ଆହାର ଅର୍ଥାତ୍ ଖାଇବାର, ଗ୍ରାସ ବୋଲିଲେ ଗିଳିପକାଇବାର । ରାହୁ ଚନ୍ଦ୍ରକୁ ଆହାର କରନ୍ତି ନାହିଁ, ଗ୍ରାସ କରନ୍ତି ।

ପ୍ରତିବନ୍ଧକ, ବାଧା—ପ୍ରତିବନ୍ଧକ କାର୍ଯ୍ୟରେ ବିଘ୍ନ ଜନ୍ମାଏ । ବାଧା ମୂଳୁଁ କରି ଦିଏ ନାହିଁ ।

ଚତୁର, ଶଠ—ଚତୁର ଶବ୍ଦ ଭଲ ଉଦ୍ଦେଶ୍ୟରେ ବ୍ୟବହୃତ

ହୁଏ । ଚାଟୁତା ପ୍ରଶଂସନୀୟ । ଶଠତା ସେଥିର ସମ୍ପୂର୍ଣ୍ଣ ବିପରୀତ

ବୈରାଗୀ, ତପସ୍ୱୀ—ସାଂସାରିକ ବିଷୟପ୍ରତି ଯେଉଁ ବ୍ୟକ୍ତି ଅନାସକ୍ତ ସେ ବୈରାଗୀ ଅଟନ୍ତି । ଯେଉଁ ବ୍ୟକ୍ତି ଆପଣାକୁ କ୍ଲେଶ ଦେଇ ତପସ୍ୟା କରନ୍ତି ସେ ତପସ୍ୱୀ ।

କାଳ, ସମୟ—କାଳ ଅନାଦି, ଅନନ୍ତ । ସମୟ ସେଥିର ନିର୍ଦ୍ଦିଷ୍ଟ ଅଂଶ ବିଶେଷ ।

ପ୍ରଭା, କିରଣ—ସୂର୍ଯ୍ୟଙ୍କ ଦେହରୁ ଯେଉଁ ରଶ୍ମିରେଖା ନିର୍ଗତ ହୁଏ ତାହାକୁ କିରଣ ବୋଲି । ପ୍ରଭା ସେଥିର କାର୍ଯ୍ୟ ଅଟେ ।

ପରିଷ୍କୃତ, ପରିଚ୍ଛନ୍ନ—ଯାହା ଦେହରେ କୌଣସି ପ୍ରକାର ମଳ ନାହିଁ ସେ ପରିଷ୍କୃତ । ଯେ ଉତ୍ତମ ବସ୍ତ୍ର ପରିଧାନ କରି ଥାଏ, ସେ ପରିଚ୍ଛନ୍ନ ।

ବସ୍ତ୍ର, ପରିଚ୍ଛଦ—ବସ୍ତ୍ର ବୋଲନ୍ତେ ଲୁଗା । ବସ୍ତ୍ରରୁ ପରିଚ୍ଛଦ ପ୍ରସ୍ତୁତ ହୁଏ । ତନ୍ତ୍ରମାନେ ବସ୍ତ୍ର ପ୍ରସ୍ତୁତ କରନ୍ତି । ଦରଜି ପରିଚ୍ଛଦ ପ୍ରସ୍ତୁତ କରନ୍ତି ।

ଅପେକ୍ଷା, ଉପେକ୍ଷା—ଏହି ଦୁଇ ପ୍ରତିଶବ୍ଦ ନୁହନ୍ତି ମାତ୍ର ଲୋକେ ନ ଜାଣି ଅପେକ୍ଷା ସ୍ଥଳରେ ଉପେକ୍ଷା ପ୍ରୟୋଗ କରନ୍ତି ବୋଲି ଏହି ଦୁଇଶବ୍ଦର ପ୍ରଭେଦ ଲେଖା ଯାଉ ଅଛି । ଅପେକ୍ଷା ବୋଲନ୍ତେ ରହି ରହିବାର । ଉପେକ୍ଷା ଶବ୍ଦର ଅର୍ଥ ତ୍ୟାଗକରିବାର, ତୁଚ୍ଛ କରିବାର । ଯଥା, ସେ ମୋ ବାକ୍ୟପ୍ରତି ଉପେକ୍ଷା ପ୍ରଦର୍ଶନ କଲେ ।

ଆଦେଶ, ଉପଦେଶ—ପ୍ରଭୁ ଭୃତ୍ୟକୁ ଆଦେଶ ଦିଅନ୍ତି । ବନ୍ଧୁ ବନ୍ଧୁକୁ ଉପଦେଶ ଦିଅନ୍ତି ।

ଭୃତ୍ୟ, ଦାସ—ଭୃତ୍ୟ ଅପେକ୍ଷା ଦାସ ଅଧିକ ନୀଚ । ଭୃତ୍ୟ ଭର୍ତ୍ତାଙ୍କଠାରୁ ବେତନ ନେଇ କାର୍ଯ୍ୟ କରେ । ଦାସ ପ୍ରଭୁଙ୍କର ସମ୍ପୂର୍ଣ୍ଣ କ୍ଷମତାଧୀନ । ଭୃତ୍ୟ ଅପେକ୍ଷାକୃତ ସ୍ୱାଧୀନ ।

ବୟ, ବୟସ୍ୟା—ଏ ଉଭୟଶବ୍ଦ ପ୍ରାୟ ଏକ ଅର୍ଥରେ ବ୍ୟବ-

ହୁତ ହୁଅନ୍ତି ଯଥା, ଗୋବଧ, ଗୋହତ୍ୟା । ମାତ୍ର ହତ୍ୟା ପ୍ରାୟ ସର୍ବଦା ମନ୍ଦ ଅର୍ଥରେ ବ୍ୟବହୃତ ହୁଏ । ଶତ୍ରୁହତ୍ୟା କେହି ଏପରି ପ୍ରୟୋଗ କରନ୍ତି ନାହିଁ ଶତ୍ରୁବଧ ବୋଲନ୍ତି ।

ଆଦର, ମର୍ଯ୍ୟାଦା—ଉଚ୍ଚବ୍ୟକ୍ତି ନିମ୍ନବ୍ୟକ୍ତିଠାରେ ଆଦର କରନ୍ତି । ନିକୃଷ୍ଟ ଉତ୍କୃଷ୍ଟକୁ ମର୍ଯ୍ୟାଦା କରନ୍ତି । ଜଣେ ପଣ୍ଡିତ କୌଣସି ବ୍ୟକ୍ତିଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ମାତ୍ର ତାଙ୍କ ଅପକୃଷ୍ଟ ହେବାରୁ ଏହିକଥା କହି ପଦ ପରିତ୍ୟାଗ କଲେ— "ନୀଚବ୍ୟକ୍ତିର ଅନୁରୋଧ ପରବଶ ହୋଇ ଆପଣ ଯେବେ ମୋ ପ୍ରତି ମନାଦର ହୋଇଥାଆନ୍ତି, ସେଥିନିମନ୍ତେ ମୋହର ମାନହାନି ହେବ ନାହିଁ" ଏସ୍ଥଳରେ ଆଦର ଶବ୍ଦର ଉଚିତ ପ୍ରୟୋଗ ହୋଇଅଛି ।

କବିତା, ପଦ୍ୟ—ଯଦ୍ୟପି ଏ ଉଭୟ ଶବ୍ଦ ଏକ ଅର୍ଥରେ ବ୍ୟବହୃତ ହୁଅନ୍ତି ତଥାପି ଏମାନଙ୍କର ପ୍ରକୃତ ଅର୍ଥରେ ଅନେକ ପ୍ରଭେଦ ଅଛି । ରସାତ୍ମକ ବାକ୍ୟକୁ କବିତା ଅଥବା କାବ୍ୟ କହନ୍ତି । ଗଦ୍ୟରେ ମଧ୍ୟ କବିତା ଥାଇ ପାରେ । ପଦ୍ୟ ଛନ୍ଦର ନିୟମାନୁସାରେ ରଚିତ ହୁଏ । ଏବଂ ଚତୁଶ୍ଚରଣ ବିଶିଷ୍ଟ ହୁଏ । କବିତା ଏବଂ ପଦ୍ୟର ଉଦାହରଣ ଯଥାକ୍ରମରେ ପ୍ରଦର୍ଶିତ ହେଲା

ସଖୀ ସମୂହରେ କୁସୁମ ବନେ,
କେଳି କରୁଥିଲେ ଏକାନ୍ତ ସ୍ଥାନେ,
କନକ ବଲ୍ଲରୀ ମଧ୍ୟେ ବିଜୁଳି,
ଖେଳି ଯାଉଥିଲା ପରାଏ ବାଳୀ, ସେ ।
କି ତାରାମଣ୍ଡଳେ ଶଶୀ । ଯେ ।

ଅପରଞ୍ଚ ସମୁଦ୍ରରେ କି ବଡ଼ରେ ଲୀଳାରେ କମଳା ଅଛି । ଯେ ।

ପଣକୁ ପଣ ପାଞ୍ଚକଡ଼ା ଜାଣ ,
ପଣଗଣ୍ଡା ଅଷ୍ଟଦାଢ଼ୀ ଇତ୍ୟାଦି

ଦ୍ୱିତୀୟ ଉଦାହରଣ ପଦ୍ୟ ହେଲେହେଁ ତାହା କବିତା ନୁହେ । ନିମ୍ନ ଉଦାହରଣ ପଦ୍ୟ ନ ହୋଇ ମଧ୍ୟ କବିତା ଅଟେ ।

କଳଙ୍କ ସମ୍ପର୍କ ଥିଲେ ସୁଦ୍ଧା ଚନ୍ଦ୍ର ମନୋହର ଦର୍ଶନ, ଶୈବାଳ ସଂଯୁକ୍ତ ହୋଇ ସୁଦ୍ଧା ପଦ୍ମ ସୁନ୍ଦର ଦିଶେ, ଏ ମନୋହାରିଣୀ ବଲ୍କଲ ପରିଧାନ କଲେହେଁ ସୌଷ୍ଠବସ୍ପ ଶୋଭା ପାଉ ଅଛନ୍ତି ।

ଅନୁରୋଧ, ଉପରୋଧ—ଅଧିକୃତ କୌଣସି ବ୍ୟକ୍ତିଙ୍କୁ କୌଣସି କାର୍ଯ୍ୟ କରିବା ନିମନ୍ତେ କହିବାର ଯେ ସେ ଅନୁରୋଧ ଯଥା, ରାଜା ସେନାପତିଙ୍କ ଅନୁରୋଧରେ ସୈନ୍ୟମାନଙ୍କୁ ପୁରସ୍କାର ଦେଲେ । ଆତ୍ମୀୟ ଅଥବା କୌଣସି ଗଣନୀୟ ବ୍ୟକ୍ତିପ୍ରତି ଯେଉଁ ଚକ୍ଷୁଲଜ୍ଜା ହୁଏ ତାହାକୁ ଉପରୋଧ ବୋଲି । ଯଥା, ରାଜା ଆପଣା ପୁତ୍ରର ଉପରୋଧ ନମାନି ତାହାଙ୍କର ବୟସ୍ୟଙ୍କୁ ଦଣ୍ଡ ଦେଲେ ।

ଧର୍ମ, ପୁଣ୍ୟ—ପବିତ୍ର ଅନୁଷ୍ଠାନାଦି ସ୍ଥଳରେ ପୁଣ୍ୟ ଶବ୍ଦର ଅଧିକ ବ୍ୟବହାର ଦେଖାଯାଏ । ସଦ୍ଗୁଣାଦି ସ୍ଥଳରେ ଧର୍ମର ବହୁଳ ପ୍ରୟୋଗ ଲକ୍ଷିତ ହୁଏ । ଯଥା, ମୁନିମାନେ ସର୍ବଦା ପୁଣ୍ୟ କର୍ମରେ ରତ ଥାଆନ୍ତି । ଅପକ୍ଷପାତିତା ରାଜାଙ୍କର ଧର୍ମ ।

ଶକ୍ତି, ବଳ, କ୍ଷମତା—ଅନ୍ତର ଅଥବା ଆଧ୍ୟାତ୍ମିକ ସ୍ଥଳମାନଙ୍କରେ ଶକ୍ତି ଶବ୍ଦର ବହୁଳ ବ୍ୟବହାର ଦେଖାଯାଏ ଯଥା ଜୀବକଶକ୍ତି । ଭୌତିକ ସ୍ଥଳରେ ବଳଶବ୍ଦର ବହୁଳ ବ୍ୟବହାର ଦେଖାଯାଏ ଯଥା, ବାହୁବଳ, ସେନା ବଳ, ଯାନ୍ତ୍ରିକ ବଳ । ଅନ୍ୟଠାରୁ ପ୍ରାପ୍ତ ଯେଉଁ ଅଧିକାର ତାହାକୁ ସାଧାରଣତଃ କ୍ଷମତା ବୋଲିଯାଏ । ଯଥା, ଦୁଇମାସରୁ ଅଧିକ କାରାବାସର ଦଣ୍ଡ ଦେବାର ତାହାଙ୍କର କ୍ଷମତାର ବହିର୍ଭୂତ । ଶକ୍ତି ଅନେକସ୍ଥଳରେ କାର୍ଯ୍ୟ ବିଶେଷରେ ପାରଗତା ସୂଚନା କରେ, ଯଥା ରୋଗଶକ୍ତି, ସ୍ମରଣଶକ୍ତି । ବଳ ପ୍ରାୟ ସେମନ୍ତ ଅର୍ଥରେ ବ୍ୟବହୃତ ହୁଏନାହିଁ; କେବଳ ଗୋଟିଏ ଗୁଣ ସୂଚନା କରେ, ଯଥା ଅର୍ଜୁନଙ୍କ ଧର୍ମବଳ ।

ଚରିତ, ଚରିତ୍ର—ଚରିତ ଶବ୍ଦର ଅର୍ଥ ଜୀବନ ବୃତ୍ତାନ୍ତ । କୌଣସି ଲୋକର ଚରିତ ବର୍ଣ୍ଣନା କରିବାକୁ ହେଲେ ଜନ୍ମରୁ ମରଣ ସେ ଯାହା ଯାହା କରିଥିଲେ ତାହା ଲେଖିବାର ଆବଶ୍ୟକ । ଚରିତ୍ର ବୋଲିଲେ ସ୍ୱଭାବ । କାହାର ଚରିତ୍ର ବର୍ଣ୍ଣନା

କହିବାକୁ ହେଲେ ସେ ଉପରେ ଲେଖିଥିଲେ ତାହା ଲେଖିବାର ଅବଶ୍ୟକ ।

ରିପୁ, ଶତ୍ରୁ—ଏ ଦୁଇ ଶବ୍ଦ ପ୍ରାୟ ସମାନାର୍ଥରେ ବ୍ୟବହୃତ ହୁଅନ୍ତି । କେବଳ କାମ, କ୍ରୋଧ, ଲୋଭ, ମୋହାଦି ସ୍ଥଳରେ ଶତ୍ରୁ ଶବ୍ଦ ପ୍ରୟୋଗ ହେବାର ଦେଖା ନ ଯାଏ । ସେମାନଙ୍କୁ ଭିତରର ରିପୁ ବୋଲନ୍ତି ।

ବୀର, ଶୂର—ଶୌର୍ଯ୍ୟ ଅପେକ୍ଷା ବୀର୍ଯ୍ୟ ଅଧିକରେ ଗୌରବାନ୍ୱିତ । ଶୂରତା ସାହସ ଏବଂ ବଳ ସୂଚନା କରେ । ମାତ୍ର ବୀରତା ଅସାଧାରଣ ରଣ କୌଶଳ, ଅସାଧାରଣ ଶିକ୍ଷା ସୂଚନା କରେ ।

ସୁହୃତ୍, ବନ୍ଧୁ—ବନ୍ଧୁ ଅପେକ୍ଷା ସୁହୃତ୍ ପ୍ରିୟତର । ସୁହୃତ୍ ମାତ୍ରେ ବନ୍ଧୁ । ମାତ୍ର ବନ୍ଧୁମାତ୍ରେ ସୁହୃତ୍ ନୁହନ୍ତି ।

ସଙ୍କଟ, ବିପଦ—କୌଣସି ଅନିଷ୍ଟପାତକୁ ବିପଦ ବୋଲନ୍ତି । ସଙ୍କଟର ଅର୍ଥ ଭିନ୍ନ ପ୍ରକାର । ସଙ୍କଟରେ ଲୋକେ କିଂକର୍ତ୍ତବ୍ୟବିମୂଢ଼ ହୁଅନ୍ତି ।

ଅଯୋଗ୍ୟ, ଅକ୍ଷମ—ସମ୍ପୂର୍ଣ୍ଣରୂପେ କ୍ଷମତା ରହିତକୁ ଅକ୍ଷମ ବୋଲି । ଯେମନ୍ତ ହେବାର ଉଚିତ ସେଥିରୁ କମ ହେଲେ ତାହାକୁ ଅଯୋଗ୍ୟ ବୋଲଯାଏ ।

ଦ୍ୱାରା, କର୍ତ୍ତୃକ—କରଣ ସ୍ଥଳରେ ଦ୍ୱାରା, କର୍ତ୍ତୃସ୍ଥଳରେ କର୍ତ୍ତୃକ ବ୍ୟବହୃତ ହୁଏ ।

ଅର୍ଥ, ପ୍ରତିଶବ୍ଦ—ବାରିଶବ୍ଦର ଅର୍ଥ ଜଳ, ପ୍ରତିଶବ୍ଦ ଜୀବନ ।

ବ୍ୟାଧି, ଆଧି,—ବ୍ୟାଧି ଶାରୀରିକ, ଆଧି ମାନସିକ ।

## ସାଧନା ।

୧ । ନିମ୍ନଲିଖିତ ଖଣ୍ଡବାକ୍ୟମାନଙ୍କର ଶୂନ୍ୟସ୍ଥଳରେ ଉପଯୁକ୍ତ ଶବ୍ଦ ପ୍ରୟୋଗ କରି ବାକ୍ୟ ପୂର୍ଣ୍ଣକର ।

(୧) ସେନାପତି ରାଜାଙ୍କର—ପାଳନ କରିବେ ତ ନାଁ ଏବିଷୟରେ ଆପଣା ବନ୍ଧୁଙ୍କୁ—ପ୍ରାର୍ଥନା କଲେ ।

(୨) ଅମେରିକାର ଇକ୍ଷୁ କ୍ଷେତ୍ରରେ କାର୍ଯ୍ୟ କରିବା ନିମନ୍ତେ ଆଫ୍ରିକାରୁ ଅନେକ କ୍ରୀତ—ପ୍ରେରିତ ହୁଅନ୍ତି ।

(୩) ବ୍ୟାକରଣ ପ୍ରଭୃତି ଶାସ୍ତ୍ରମାନ ପଢ଼ି ପଣ୍ଡିତମାନେ—ରଚନା କର ଶାରନ୍ତି ମାତ୍ର—ଭଙ୍ଗୀ ଭିନ୍ନ ପ୍ରକାର ।

(୪) ଶତ୍ରୁ ପ୍ରତି ଶତ୍ରୁଙ୍କ ସୈନ୍ୟ—କରନ୍ତି, ସେ ସମୃଠାରେ ସେନ୍ଧିପତ୍ର—କଲେ ।

(୫) ଯେ ଲୋକ ଅଣଣା ଅବସ୍ଥାରେ ସର୍ବଦା—ଥାଏ, ସେ ପ୍ରକୃତ ସୁଖର ଅଧିକାରୀ ଅଟେ ।

(୬) ବରଦାର [illegible]ଙ୍କ ଶାସନ ପ୍ରଣାଳୀ ସମ୍ବନ୍ଧରେ ଜନମନ୍ତେ ଅନେକ—ଦଅ ଯାଉଅଛି ।

(୭) ତାହାଙ୍କର— ଦୋଷ ଅଛି ଏବଂ—କହାନ୍ତି ମନ୍ଦ ।

(୮) ମ୍ଲେଚ୍ଛ କରିବା—ତାହାଙ୍କୁ ୬ ମାସ କାରାବାସର—ହେଲା ।

(୯) କାଳିଦାସଙ୍କର ରଚନା ଅତି —ଅଟେ ।

(୧୦) ନ୍ୟାୟ—ଅଧ୍ୟୟନ କର ସେ ଅନେକ—ଲର କରୁଅଛନ୍ତି ଏବଂ ସମ୍ପ୍ରତି—ତାହାଙ୍କର ସୁନ୍ଦର ବ୍ୟୁତ୍ପତ୍ତି ଅଛି ।

(୧୧) ଗଣକ କୋଷ୍ଠୀ ଦେଖି କହିଲା ଯେ ତାହାଙ୍କର—୫୬ ବର୍ଷ, ମ ୬ ୩୬ ବର୍ଷ—ସମୟରେ ଗୋଟିଏ ଉତ୍କଟ ପୀଡ଼ା ହେବ ।

(୧୨) ସୀତାଙ୍କ ମସ୍ତକମଣି ଦେଖି ରାମ ଅତ୍ୟନ୍ତ—ହେଲେ ।

(୧୩) ଭାରତବର୍ଷର ଲୋକଙ୍କ ପକ୍ଷରେ ଇଂରେଜି—ଉପଯୋଗୀ ନୁହେ ।

(୧୪) ପରମହଂସମାନଙ୍କର କୌଣସି ବିଷୟରେ ସ୍ପୃହା ନ ଥାଏ, ଯେ ଯାହା ଦିଏ ସେଥିରେ ସେମାନେ—ହୁଅନ୍ତି ।

(୧୫) ରାମ ଲଙ୍କାରୁ ପ୍ରତ୍ୟାଗତ ହୋଇ ସ୍ୱଜନମାନଙ୍କୁ—କଲେ ।

(୧୬) ଚନ୍ଦ୍ରଗୁପ୍ତଙ୍କର—ସବଳ ଥିଲା, କେବଳ ଗୋଟିଏ ନିର୍ବଳ ଥିଲା ।

(୧୭) ଧର୍ମ୍ମପଥରେ ଥାଇ ଧନ—ଉଚିତ ।

(୧୮) ଶକୁନି ଅତି—ଥିଲେ, ପାଣ୍ଡବମାନଙ୍କୁ ବିପଦରେ ପକାଇବା ନିମନ୍ତେ ନାନାପ୍ରକାର ଉପାୟ କଲେ ।

(୧୯) ଅଗ୍ନି ଶୀତଳ ହେବାର—

(୨୦) ତାହାଙ୍କୁ ସେ ଦ୍ରବ୍ୟ—ହେଲପର ଦମ୍ଭ ନାହିଁ ।

(୨୧) ତାହାଙ୍କ ଅପେକ୍ଷା ସେ—ପରିଶ୍ରମ କରିଥିଲେ, —ଟଙ୍କା ବ୍ୟୟ କରିଥିଲେ ।

(୨୨) ନେପୋଲିୟନ କହୁଥିଲେ ଯେ ମନୁଷ୍ୟର — ଇଚ୍ଛା ନାହିଁ ।

(୨୩) ଖ୍ରୀଷ୍ଟ କୌରବଙ୍କର—ପକ୍ଷ ଥିଲେ ।

(୨୪)—ଲୋକଙ୍କର ବଚନ ସହି ହୁଏ ନାହିଁ ।

(୨୫) ରୁକ୍ମିଣୀଙ୍କୁ କୃଷ୍ଣ ପାରିଜାତ ଦେବାର ଦେଖି ସତ୍ୟଭାମାଙ୍କର—ଜାତ ହେଲା ।

(୨୬) ଦୁର୍ଯ୍ୟୋଧନ ଅତ୍ୟନ୍ତ—ଥିଲେ । ତେଣୁ ଦ୍ରୌପଦୀକୃତ ଅପମାନ ତାହାଙ୍କର ଅସହ୍ୟ ହେଲା ।

(୨୭) ସ୍ୱାମୀ ମରିଗଲେ ସ୍ତ୍ରୀ ଗ୍ରତସମସ୍ତେ—ପ୍ରଦର୍ଶନ କରନ୍ତି ।

(୨୮) ସେ ଯାହା ଦେଲେ ମୋହର ପ୍ରୟୋଜନ ପ୍ରତି ତାହା—ହେଲା ।

(୨୯) ଇନ୍ଦ୍ରଜିତର ବଧ ବୃତ୍ତାନ୍ତ ଶୁଣି ରାବଣ—ଅଧୀର ହୋଇ ଯୁଦ୍ଧ ସ୍ଥଳକୁ ଅସିଲେ ।

(୩୦) ପୁତ୍ରର ମନ—ଦେଖି ସେ ଅତ୍ୟନ୍ତ—ହେଲେ ।

(୩୧) ରାଜସଭାକୁ ଯିବାବେଳେ—ଏବଂ ହୋଇ — ଯିବାର ଉଚିତ ।

(୩୨) ଭାରତବର୍ଷରେ ବିବାହର ରୀତି ଅତି କଦର୍ଯ୍ୟ, ଯୁବକ ଯୁବତୀ ମଧ୍ୟରେ—ସଞ୍ଚାର ହେବା ପୂର୍ବରୁ ସେମାନେ—ସୂତ୍ରରେ ବଦ୍ଧ ହୁଅନ୍ତି ।

(୩୩) ସେ ମୋହର ଅଭିଭାବକ ଅଟନ୍ତି, ମୁଁ ତାହାଙ୍କର ଅନୁମତି—ରଖେଁ ।

(୩୪) ପରେ—ସମସ୍ତେ ଦିବ୍ୟ ଚକ୍ଷୁରେ ଦେଖନ୍ତି ।

(୩୫) ରାମଚନ୍ଦ୍ର ପ୍ରଜାମାନଙ୍କୁ—ନିର୍ବିଶେଷରେ ପାଳନ କରୁଥିଲେ ।

(୩୬) ପ୍ରାତଃକାଳର—ସମୀରଣ ସେବନ କଲେ ଶରୀରର ସ୍ଫୂର୍ତ୍ତି ହୁଏ ।

(୩୭) ଏହି—ବିଶ୍ୱ ମଧ୍ୟରେ ପୃଥିବୀ ଗୋଟିଏ ବିନ୍ଦୁପରି ।

(୩୮) ସେହିକାର୍ଯ୍ୟ ସାଧନ ବିଷୟରେ ଅନେକ—ଅଳ୍ପ ମାତ୍ର ସେ ସମସ୍ତ—ଅତିକ୍ରମ କଲେ ।

(୩୯) କୃଷ୍ଣଙ୍କର ଆଗମନରେ ବିଳମ୍ବ ଦେଖି ରାଧିକା ଅତ୍ୟନ୍ତ ହେଲେ ।

(୪୦) ରାମ ମାୟାମୃଗକୁ—କଲେ ।

(୪୧) ମୁନିମାନେ ଫଳ ମୂଳ—କରନ୍ତି ।

(୪୨) ବିପଦର ବେଳେ କାହାର—ମାଗିବାର ଉଚିତ ନୁହେଁ ।

(୪୩) କଲମ୍ବସ ଆମେରିକା—କରିଥିଲେ ।

(୪୪) ଅର୍ଜ୍ଜୁନ ରଣସ୍ଥଳରେ—ବିକ୍ରମ ପ୍ରଦର୍ଶନ କଲେ ।

(୪୫) ଯେମାନେ ବେଶ୍ୟା ପ୍ରତି—ହୁଅନ୍ତି, ସେମାନଙ୍କର ସର୍ବନାଶ ହୁଏ ।

(୪୬) ମହାକବି କାଳିଦାସଙ୍କର ଅଲୌକିକ—ଥିଲା ।

(୪୭) ସୀତାଙ୍କର—ପରମ ପବିତ୍ର ଥିଲା ।

(୪୮) କବିତ୍ୱ—ଶିକ୍ଷାଦ୍ୱାରା ଲାଭ ହୁଏ ନାହିଁ ।

(୪୯) ଗନ୍ଧବତୀ ପୃଥିବୀର—ଅଟେ ।

(୫୦) ଦଶରଥ ଜନକଙ୍କୁ—କଲେ ।

---

## ୫ମ ଅଧ୍ୟାୟ ।

## ବିପରୀତାର୍ଥ ବୋଧକ ଶବ୍ଦ ।

କୌଣସି ଶବ୍ଦର ବିପରୀତ ଅର୍ଥ ବୋଧକ ଶବ୍ଦ ଜାଣି ଉଭୟ ଶବ୍ଦକୁ ଉପଯୁକ୍ତ ସ୍ଥଳରେ ପ୍ରୟୋଗ କରିବାକୁ ଶିଖିଲେ ରଚନା ଶିକ୍ଷାର ଅନେକ ସାହାଯ୍ୟ ହୁଏ । ନିମ୍ନରେ ସେହିପରି କେତେକ

ଶବ୍ଦ ପ୍ରବୃତ୍ତ ହେବ । ଶିକ୍ଷକ ଉଭୟ ପଦ ଛାତ୍ରମାନଙ୍କୁ କହି ନ ଦେଇ ପ୍ରଥମ ଶବ୍ଦ କହି ସେଥିର ବିପରୀତ ଶବ୍ଦ କଅଣ ତାହା ପଚାରିବେ । ଛାତ୍ରମାନେ ଅଧିକାଂଶ ପ୍ରଶ୍ନର ଉତ୍ତର ଦେଇ ପାରିବେ । ଅନେକ ଚିନ୍ତା କରି ସୁଦ୍ଧା ଯେବେ କୌଣସି ଶବ୍ଦର ବିପରୀତ ଶବ୍ଦ କହି ନ ପାରିବେ କେବଳ ସେହିପରି ସ୍ଥଳରେ ଶିକ୍ଷକଙ୍କର କହି ଦେବାର ଉଚିତ ।

ପ୍ରତ୍ୟକ୍ଷ-ପରୋକ୍ଷ । ସାମାନ୍ୟ-ବିଶେଷ । ସାହସୀ-ଭୀରୁ । ବିଜ୍ଞ-ଅଜ୍ଞ । ଉଚ୍ଚ-ନୀଚ । ସଜନ-ବିଜନ । ସଫଳ-ବିଫଳ । ନୈସର୍ଗିକ-କୃତ୍ରିମ । ଧାର୍ମିକ-ପାପୀ । ସତ୍ୟ ମିଥ୍ୟା । ଆଶା-ଶଙ୍କା । ସ୍ଥିର-ଚଞ୍ଚଳ । ହାସ୍ୟ-ରୋଦନ । ନିକଟ-ଦୂର । ଅନୁକୂଳ-ପ୍ରତିକୂଳ । ସହଜ-କଠିନ । ବିଷ-ଅମୃତ । ନୂତନ-ପୁରାତନ । ନିନ୍ଦା-ପ୍ରଶଂସା । ପ୍ରାପ୍ୟ-ଅପ୍ରାପ୍ୟ । ମୂର୍ଖ-ପଣ୍ଡିତ । ଉତ୍ତମ-ଅଧମ । ସୁନ୍ଦର-କୁତ୍ସିତ । ଶୀତଳ-ଉଷ୍ଣ । ଶ୍ୱେତ-କୃଷ୍ଣ । ବାମ-ଦକ୍ଷିଣ । ସବଳ-ଦୁର୍ବଳ । ସୂକ୍ଷ୍ମ-ସ୍ଥୂଳ । ଗତି-ସ୍ଥିତି । ଅନୁଗ୍ରହ-ନିଗ୍ରହ । ସରସ-ନୀରସ । ଦଣ୍ଡ-ପୁରସ୍କାର । ହାନି-ଲାଭ । ଜନ୍ମ-ମରଣ । ଧନୀ-ଦରିଦ୍ର । ମାନ-ଅପମାନ । ଆବିର୍ଭାବ-ତିରୋଭାବ । କ୍ଷୟ-ବୃଦ୍ଧି । ଅଧିକ-ଅଳ୍ପ । ଶତ୍ରୁ-ମିତ୍ର । ସୁସ୍ଥ-ରୁଗ୍ଣ । ଗୁରୁ ଲଘୁ । ପ୍ରସନ୍ନ-ବିଷର୍ଣ୍ଣ । ଶିଷ୍ଟ-ଦୁଷ୍ଟ ଘନ-{ତରଳ / ବିରଳ} । ସରଳ-ବକ୍ର । ମଧୁର-କଟୁ । ସୁଲଭ-ଦୁର୍ଲଭ । ଅଭାବ-ସଦ୍ଭାବ । ପ୍ରବୃତ୍ତି-ନିବୃତ୍ତି । ଆତ୍ମପ୍ରସାଦ-ଆତ୍ମଗ୍ଲାନି । ଉନ୍ନତ-ଅବନତ । ସ୍ୱର୍ଗ-ନରକ । କୃତଜ୍ଞ କୃତଘ୍ନ । ପ୍ରବୃତ୍ତ-ନିବୃତ୍ତ ଆକୁଞ୍ଚନ-ପ୍ରସାରଣ ।

## ସାଧନା ।

ନିମ୍ନଲିଖିତ ଖଣ୍ଡବାକ୍ୟ ଗୁଡ଼ିକୁ ସମ୍ପୂର୍ଣ୍ଣ କରି ଲେଖ ।

(୧) ବିଜ୍ଞ ଶତ୍ରୁ ଭଲ,—ମିତ୍ର ଭଲ ନୁହେଁ ।

(୨) ଧାର୍ମିକର ମନ ନିର୍ଭୟ, — ମନ ସବୁବେଳେ ଶଙ୍କାକୁଳ ।

(୩) ସଂସାରରେ ସୁଖ—, ହାସ୍ୟ—ସର୍ବଦା ଲାଗିଅଛି ।

(୪) ସାହସୀ ଲୋକଙ୍କୁ ସମସ୍ତେ ଆଦର କରନ୍ତି—ଲୋକେ ଗ୍ରାହ୍ୟ କରେ ନାହିଁ ।

(୫) ପ୍ରଶଂସା ଶୁଣି ନିତାନ୍ତ ଅହ୍ଲାଦିତ ହେବାର,—ଶୁଣି ନିତାନ୍ତ କାତର ହେବାର ଦୁର୍ବଳ ମନର ଚିହ୍ନ ।

(୬) ସେ ଆସିଲେ ଯେ ମୋହୋର କାର୍ଯ୍ୟସିଦ୍ଧି ହୋଇପାରିବ ଏବିଷୟରେ ମୋହର ସମ୍ପୂର୍ଣ୍ଣ ଆଶା ଅଛି , ମାତ୍ର କାଳେ ସେ ନ ଆସନ୍ତି ମୋହର ଏହି ହେଉ ଅଛି ।

(୭) ନିକଟରେ ଥିଲେ ଚଞ୍ଚଳତା ହୁଏ,—ଥିଲେ ତାହା ହୁଏ ନାହିଁ ।

(୮) ସ୍ୱଦେଶର ମମତା—ସ୍ଥିତ କଦାଚ ହେବାର ନୁହେ ।

(୯) ପୁତ୍ର ଛନ ଭଲ ହେଲେ କେହି ଆଦର କରନ୍ତି ନାହିଁ;—ମନ୍ଦ-ହେଲେ ସୁଦ୍ଧା ସମସ୍ତେ ତାହାକୁ ଆଦର କରନ୍ତି ।

(୧୦) ବ୍ୟବସାୟରେ ପ୍ରବୃତ୍ତ ହେଲେ ହାନି—ଅବଶ୍ୟ ହେବ ।

(୧୧) ପ୍ରତ୍ୟକ୍ଷରେ ପ୍ରିୟବାକ୍ୟ କହେ, ଅଥଚ—କାର୍ଯ୍ୟ ହାନି କରେ ଏପରି ଶଠ ମିତ୍ରକୁ ପରିତ୍ୟାଗ କରିବ ।

(୧୨) ବିପଦ କାଳରେ ଅମୃତ---ପରି ହୁଏ ।

(୧୩) ଛନ୍ନହେଲେ—ନଷ୍ଟ ହେବ ।

(୧୪) ଦୁଃଖ ନକଲେ—ହେବ ନାହିଁ ।

(୧୫) ଚନ୍ଦ୍ରଙ୍କର ମାସମଧ୍ୟରେ କ୍ଷୟ--ହୁଏ ।

(୧୬) ଦ୍ରବ୍ୟ ସୁଲଭ ହେଲେ ସୁମୂଲ୍ୟ ହୁଏ, —ହେଲେ—ହୁଏ ।

(୧୭) ବିଧାତା ଅନୁକୂଳ ହେଲେ ବିପଦରୁ—ବାହାରେ ,—ହେଲେ ସମ୍ପଦରୁ—ବାହାରେ ।

(୧୮) ଧର୍ମ ଆଚରିଲେ ମନରେ ଆତ୍ମପ୍ରସାଦ ଜାତହୁଏ , ମାତ୍ର—କଲେ—ଜାତହୁଏ ।

(୧୯) ଶରୀର ସବଳ ଥିଲେ ରୋଗ ଆସି ପାରେ ନାହିଁ—ହେଲେ ଆକ୍ରମଣ କରେ ।

(୨୦) ସରଳମାର୍ଗ ଅବଲମ୍ବନ କଲେ କୌଣସି ଅପଦ ଘଟେ ନାହିଁ ମାତ୍ର—ମାର୍ଗ ବିପଦ୍ ସଙ୍କୁଳ ।

(୨୧) କୃତ୍ରିମ ଶୋଭା କଦାଚ—ଶୋଭାର ସମାନ ହୋଇ ନ ପାରେ ।

(୨୨) ସେ ଦୁଇସ୍ଥାନ ମଧ୍ୟରେ ସ୍ୱର୍ଗ—ପ୍ରଭେଦ ଅଛି ।

(୨୩) ଉତ୍ତମଠାରେ ପ୍ରାର୍ଥନା—ହେବାର ଭଲ,—ଠାରେ—ହେବାର ଭଲ ନୁହେ ।

(୨୪) ଉପାୟ ବେଳେ—ଚନ୍ତିବାର ବୁଦ୍ଧିମାନର କାର୍ଯ୍ୟ ।

(୨୫) ଶରୀର ସୁସ୍ଥଥିଲେ ସବୁବେଳେ ଭଲ ଲାଗେ,—ହେଲେ କୌଣସି କାର୍ଯ୍ୟରେ ମନ ଲାଗେ ନାହିଁ ।

(୨୬) ସତ୍କାର୍ଯ୍ୟର—ଏବଂ ଅସତ୍କାର୍ଯ୍ୟର ଦଣ୍ଡ ଅବଶ୍ୟ ହେବ ।

(୨୭) ମଧୁର ବଚନରେ ସମସ୍ତେ ତୁଷ୍ଟ ହୁଅନ୍ତି;—କେହି ସୁଖ ପାଆନ୍ତି ନାହିଁ ।

(୨୮) ସମାଜ ସଭ୍ୟ ହେଲେ ଶାରୀରିକ ଶକ୍ତି ଅପେକ୍ଷା—ଶକ୍ତିର ଗୌରବ ଅଧିକ ହୁଏ ।

(୨୯) ସ୍ଥୂଳବୁଦ୍ଧି ଲୋକେ ଯାହା ଅସାଧ୍ୟ ମଣନ୍ତି—ଲୋକଙ୍କର ତାହା ସୁସାଧ୍ୟ ।

(୩୦) ବିବେଚନା ପୂର୍ବକ ଶ୍ରମ କଲେ ତାହା କଷ୍ଟସ୍ୟ ସଫଳ ହୁଏ, ନଚୁବା—ହୁଏ ।

——୦——

## ୬ ଷ୍ଠ ଅଧ୍ୟାୟ—ଯୁଗ୍ମଶବ୍ଦ ।

ଅନ୍ୟାନ୍ୟ ଭାଷାପରି ଉତ୍କଳଭାଷାରେ ମଧ୍ୟଅନେକସ୍ଥଳରେ ଦଓଟୀ ଶବ୍ଦ ବ୍ୟବହାର କରିବାକୁ ହେଲେ ବକ୍ତାର ଇଚ୍ଛା ଅନୁସାରେ ଗୋଟିକୁ ଅଗେ ଗୋଟିକୁ ପଛେ ବ୍ୟବହାର କଲେ ଚଳିବ ନାହିଁ । ପୂର୍ବରୁ ଯେପରି ବ୍ୟବହାର ଚଳି ଅସୁଅଛି ସେହି ବ୍ୟବହାରର ବିରୁଦ୍ଧ ପ୍ରୟୋଗ କଲେ ଦୋଷ ପଡ଼ିବ । ହାନଙ୍କର ଏହି ଯୁଗ୍ମ ଶବ୍ଦ ମଧ୍ୟରୁ କାର ଅଗେ କହିଲେ ଅର୍ଥର ବ୍ୟତ୍ୟୟ ହେବ ନାହିଁ । ତଥାଚ ତାହା ବ୍ୟବହାର ଅନୁମୋଦିତ ନୁହେ । ଏବିଷୟରେ କୌଣସି ନିୟମ ନିର୍ଦ୍ଦେଶ କରିଯାଇ ନ ପାରେ ।

କେବଳ ଏତିକି ମାତ୍ର ବୋଲାଯାଇ ପାରେ ଯେ ଅଧିକାଂଶ ସ୍ଥଳ-ରେ ଗୁରୁତ୍ୱର ବିଶିଷ୍ଟ ଶବ୍ଦ ଅଥବା ପ୍ରଧାନ ସ୍ୱରବିଶିଷ୍ଟ ଶବ୍ଦ ଅଗ୍ରେ ବ୍ୟବହୃତ ହୁଏ । ନିମ୍ନରେ ସେହିପରି କେତେକ ଯୁଡ଼ି ଯୁଗ୍ମଶବ୍ଦ ପ୍ରଦତ୍ତ ହେଲା । ଶିକ୍ଷକମାନେ ଅନ୍ୟ ଉଦାହରଣ ସ୍ୱୟଂ ଦେଇ ପାରିବେ ।

ଗୃହ, ବାସ । ଫଳ, ମୂଳ । ଇତର, ବିଶେଷ । ବେଶି, କମି । ଭଲ, ମନ୍ଦ । ଦେବ, ଦାନବ । କ୍ଷତ, ବୃଦ୍ଧି । ଆଖି, କାନ । ଅନ୍ନ, ବସ୍ତ୍ର । ଜଳ, ସ୍ଥଳ । ଗୋରୁ,ମହିଷ । ପାପ,ପୁଣ୍ୟ । ବୀଜ, ଅଙ୍କୁର । ମତ୍ସ୍ୟ, ମାଂସ । ଉଚ୍ଚ, ନୀଚ । ଜନ୍ମ, ମରଣ । ଅସ୍ତ୍ର, ଶସ୍ତ୍ର । ଅନ୍ନ, ବ୍ୟଞ୍ଜନ । କୀଟ ପତଙ୍ଗ । ବୃକ୍ଷ, ଲତା । ଚନ୍ଦ୍ର, ସୂର୍ଯ୍ୟ । ଦୟା, ମାୟା । ବସନ, ଭୂଷଣ । ବିଷ, ଅମୃତ । କଳା ଧଳା । ଦାନ, ଧ୍ୟାନ । ପଶୁ, ପକ୍ଷୀ । ଦଧି, ଦୁଗ୍ଧ । କ୍ଷୁଧା, ତୃଷା । ହସ୍ତ, ପାଦ । ମୃଗ, ବ୍ୟାଘ୍ର । ସତ୍ୟ, ମିଥ୍ୟା । ସ୍ୱର୍ଗ, ନରକ । ନାମ, ଧାମ । ଯାଇ, ଯୁଇ । ବ୍ୟାଘ୍ର, ଭଲ୍ଲୂକ । ପରିଷ୍କୃତ, ପରିଚ୍ଛନ୍ନ । ଘର, ଦ୍ୱାର ।

—— ୦ ——

## ୭ମ ଅଧ୍ୟାୟ—ରୂପାନ୍ତର ସମ୍ପାଦନ ।

କୌଣସି ବାକ୍ୟର ଅର୍ଥ ଘେନି ସେହି ଅର୍ଥକୁ ନାନାପ୍ରକାର କରି ଲେଖିବାର ଅଭ୍ୟାସ ରଚନା ଶିକ୍ଷା ପକ୍ଷରେ ଅତ୍ୟନ୍ତ ଶ୍ରେୟସ୍କର । କୃତ୍‌ପ୍ରତ୍ୟୟ, ତଦ୍ଧିତ, ସମାସ ପ୍ରଭୃତି ଦ୍ୱାରା ବାକ୍ୟ ଯେ ରୂପେ ରୂପାନ୍ତରିତ ହୁଏ, ୨ୟ ଅଧ୍ୟାୟରେ ତାହା ବାହୁଲ୍ୟ ରୂପେ ପ୍ରଦର୍ଶିତ ହୋଇଅଛି । ଏହା ବ୍ୟତୀତ ବାକ୍ୟକୁ ରୂପାନ୍ତରିତ କରିବା ନିମନ୍ତେ ଅନ୍ୟାନ୍ୟ ପ୍ରକ୍ରିୟା ଅବଲମ୍ବନ କରିବାକୁ ହୁଏ । କେତେବେଳେ ବା ଆଧାର ପରିବର୍ତ୍ତରେ ଆଧାର୍ଯ୍ୟ ପ୍ରୟୋଗ କରିବାକୁ ହେବ, ଆଧାର୍ଯ୍ୟ ପରିବର୍ତ୍ତରେ ଆଧାର ପ୍ରୟୋଗ କରିବାକୁ ହେବ, ଅଂଶ ପରିବର୍ତ୍ତରେ ସମୁଦାୟ, ସମୁଦାୟ ପରିବର୍ତ୍ତରେ ଅଂଶ ପ୍ରୟୋଗ କରିବାକୁ ହେବ । କେତେବେଳେ ଅବା ପ୍ରତିଶବ୍ଦ ପ୍ରୟୋଗ କରିବାକୁ ହେବ ।

କେତେବେଳେ ଅବା ଷଷ୍ଠୀ ବିଶେଷ୍ୟାର୍ଥକ ଅବ୍ୟୟ ପ୍ରୟୋଗ କରିବାକୁ ହେବ । ଫଳତଃ ଏବିଷୟରେ କୌଣସି ବ୍ୟାପକ ନିୟମ ନିର୍ଦ୍ଦେଶ କରିବାର ଅସମ୍ଭବ । ନିମ୍ନରେ ଆଦର୍ଶ ସ୍ୱରୂପ ଉଦାହରଣ ଦିଆ ଯାଉଅଛି । ଛାତ୍ରମାନେ ଏହି ଆଦର୍ଶର ଅନୁକରଣ କରି ଅନ୍ୟାନ୍ୟ ବାକ୍ୟ ରୂପାନ୍ତର କରି ଲେଖିବେ ।

୧ ମ ଉଦାହରଣ ।

୧ । ସମସ୍ତେ ଅର୍ଥ ବାଞ୍ଛା କରନ୍ତି ।
୨ । ଅର୍ଥ ସମସ୍ତଙ୍କର ବାଞ୍ଛନୀୟ ଅଟେ ।
୩ । ଅର୍ଥଲାଭର ଇଚ୍ଛା ସମସ୍ତଙ୍କର ଅଛି ।
୪ । ସମସ୍ତଙ୍କର ଅର୍ଥଲିପ୍ସା ଅଛି ।
୫ । ସମସ୍ତେ ଅର୍ଥଲିପ୍ସୁ ଅଟନ୍ତି ।
୬ । କଉଡି କି ସମସ୍ତେ ଚାହାନ୍ତି ।
୭ । ଟଙ୍କାକୁ ପ୍ରତ୍ୟେକ ଲୋକେ ଚାହେଁ ।
୮ । ଅର୍ଥୀ ହେବାକୁ ସମସ୍ତଙ୍କର ଅଭିଳାଷ ।
୯ । ଅର୍ଥକୁ ନ ଚାହେଁ ଏମନ୍ତ ଲୋକ ନାହିଁ ।
୧୦ । ଧନ ସମସ୍ତଙ୍କର ସ୍ପୃହଣୀୟ ।

୨ ୟ ଉଦାହରଣ ।

୧ । ସମସ୍ତେ ମରିବେ ।
୨ । ଯମଦଣ୍ଡ ସମସ୍ତଙ୍କୁ ହେବ ।
୩ । ମୃତ୍ୟୁ ସମସ୍ତଙ୍କର ଅଦୃଷ୍ଟରେ ଅଛି ।
୪ । ସମସ୍ତେ ଯେ ମରିବେ ଏବିଧାନ ପୂର୍ବରୁ ହୋଇଅଛି ।
୫ । ମୃତ୍ୟୁ ମନୁଷ୍ୟର ଅପରିହାର୍ଯ୍ୟ ।
୬ । ସମସ୍ତଙ୍କ ଦେହ ପତନ ହେବ ।
୭ । ମୃତ୍ୟୁ ପ୍ରକୃତିର ନିୟମ ଅଟେ ।
୮ । ମନୁଷ୍ୟର ଜୀବନ ସ୍ଥାୟୀ ନୁହେ ।
୯ । ମନୁଷ୍ୟର ମୃତ୍ୟୁ ନିଶ୍ଚୟ ହେବ ।
୧୦ । ମନୁଷ୍ୟର ଅମର ନୁହେ ।
୧୧ । ମୃତ୍ୟୁ କାହାରିକୁ ଛାଡିବେ ନାହିଁ ।

୧୬ । ମୃତ୍ୟୁରୁ କେହି ରକ୍ଷା ପାଇବେ ନାହିଁ ।
୧୭ । ପଞ୍ଚଭୂତର ଦେହ ପଞ୍ଚଭୂତରେ ଲୀନ ହେବ ।

ସାଧନା ।

ନିମ୍ନ ବାକ୍ୟ ଗୁଡ଼ିକର ଅର୍ଥ ଯେଉଁ ସେହି ଅର୍ଥକୁ ପୂର୍ବପ୍ରଦ-ର୍ଶିତ ଆଦର୍ଶ ଅନୁସାରେ ନାନାପ୍ରକାରେ କରି ଲେଖ ।

(୧) ଦରିଦ୍ରକୁ ସମସ୍ତେ ତୁଚ୍ଛ କରନ୍ତି ।
(୨) ଅହଂକାରୀ ଲୋକକୁ କେହି ସୁଖ ପାଅନ୍ତି ନାହିଁ ।
(୩) ଋଣଗ୍ରସ୍ତ ଲୋକର ସର୍ବଦେଳେ ଚିନ୍ତା ।
(୪) ବୁଦ୍ଧି ବଳଠାରୁ ବଳ ନାହିଁ ।
(୫) ମାନୀର ମାନହାନି ମରଣ ଅପେକ୍ଷା କଷ୍ଟକର ।
(୬) ସୁଚରିତ୍ର ବିଦ୍ୟାର ଅଭାବ ପୂରଣ କରେ ।
(୭) ବିଦ୍ୟାର ଗୌରବ ବିଦ୍ୱାନ ଜାଣନ୍ତି ।
(୮) ନିର୍ମଳ ବାୟୁ ସ୍ୱାସ୍ଥ୍ୟ ପକ୍ଷରେ ଶ୍ରେୟସ୍କର ।
(୯) ଧାର୍ମିକଲୋକର ମନ ନିର୍ଭୀକ ।
(୧୦) ଯାହାର କୀର୍ତ୍ତି ଅଛି, ସେ ଅମର ।

"ସୀତାଙ୍କର କ୍ରନ୍ଦନ ଶବ୍ଦ ଶ୍ରବଣ କରି, ସନ୍ନିହିତ ଋଷିତ-ନୟମାନେ ଶବ୍ଦାନୁସାରେ କ୍ରନ୍ଦନସ୍ଥାନରେ ଉପସ୍ଥିତ ହେଲେ; ଦେଖିଲେ ଏକ ଅନିର୍ବଚନୀୟରୂପା କାମିନୀ ହାହାକାର ଅଚ୍ଛ ଶିରରେ କରାଘାତ କରି ଅଶେଷବିଧ ବିଳାପ ଓ ପରିତାପ କରୁ ଅଛି । ତଦର୍ଶନରେ ତାହାଙ୍କର କୋମଳ ହୃଦୟରେ ଯତ୍ପରୋ-ନାସ୍ତି କାରୁଣ୍ୟ ରସର ଆବିର୍ଭାବ ହେଲା । ସେମାନେ ତ୍ୱରିତ ଗମନରେ ବାଲ୍ମୀକି ସମୀପରେ ଉପସ୍ଥିତ ହୋଇ, ବିନୟ ନମ୍ର ବଚନରେ ନିବେଦନ କଲେ, ଭଗବାନ ! ଅମ୍ଭେମାନେ ଫଳ, କୁସୁମ, କୁଶ, ସମିଧ ଆହରଣର ନିମିତ୍ତ ଭାଗୀରଥୀ ତୀର ସମୀପସ୍ଥ ବନସ୍ଥଳରେ ଭ୍ରମଣ କରୁଥିଲୁଁ, ଅକସ୍ମାତ୍ ସ୍ତ୍ରୀଲୋକର ଆର୍ତ୍ତନାଦ ଶ୍ରବଣ କଲୁଁ ଏଣେ ତେଣେ ଏବ ଅନୁସନ୍ଧାନ କରି

ଶବ୍ଦଶ୍ରବଣପରେ ଦେଖିଲୁଁ ଏକ ଅଲୌକିକ ରୂପଲାବଣ୍ୟ ସମ୍ପନ୍ନା କାମିନୀ ଅତ୍ୟନ୍ତ ଅନାଥାପରି ଏକାନ୍ତ କାତର ହୋଇ ଉଚ୍ଚୈଃସ୍ୱରରେ ରୋଦନ କରୁ ଅଛନ୍ତି ।”

ନିମ୍ନଲିଖିତ ପ୍ରସଙ୍ଗର ସ୍ଥୂଳ ଭାବ ନିମ୍ନରେ ଅନ୍ୟରୂପରେ ବ୍ୟକ୍ତ କରାଗଲା ।

ଜାନକୀ ଉଚ୍ଚୈଃସ୍ୱରରେ ବିଳାପ କରିବାକୁ ଲାଗିଲେ । ନିକଟବର୍ତ୍ତୀ ମୁନିକୁମାରମାନେ ସେହି ରୋଦନ ଧ୍ୱନିକୁ ଲକ୍ଷ୍ୟ କରି ସେଠାକୁ ଆସି ଦେଖିଲେ ଯେ ଗୋଟିଏ ଅବଳା ମସ୍ତକରେ ହସ୍ତମାରି ରୋଦନ କରୁଅଛି । ମୁନିକୁମାରମାନେ ସ୍ୱଭାବତଃ ଦୟାପ୍ରବଣ । ତାହାଙ୍କର ଏହି ଅବସ୍ଥା ଦେଖି ସେମାନଙ୍କ ହୃଦୟରେ ଦୟା ସଞ୍ଚରିଲା । ସେମାନେ ତତ୍କାଳ ବାଲ୍ମୀକିଙ୍କଠାରୁ ଯାଇ ବିନୟପୂର୍ବକ କହିଲେ, ପ୍ରଭୋ ! ଅସ୍ମେମାନେ ଫୁଲ, ଫଳ, କୁଶ, ସମିଧ ସଞ୍ଚୟ ନିମନ୍ତେ ଗଙ୍ଗାତୀରସ୍ଥିତ କାନନରେ ବୁଲୁ’ ହଠାତ୍ ଗୋଟିଏ ସ୍ତ୍ରୀର କ୍ରନ୍ଦନଧ୍ୱନି ଶୁଣିଲୁଁ ଏବଂ ସେ ଧ୍ୱନିକୁ ଅନୁସାରି ତାହାଙ୍କ ନିକଟବର୍ତ୍ତୀ ହେଲୁଁ । ସେହି ସ୍ତ୍ରୀର ଏମନ୍ତ ମନୋହର ଲାବଣ୍ୟ ଯେ ମର୍ତ୍ତ୍ୟ ଲୋକରେ ସେପରି ରୂପ ଦେଖା ନ ଥିଲା । ସେ ନିରାଶ୍ରୟ ହୋଇ ନିତାନ୍ତ ଦୁଃଖରେ ବିଳାପ କରୁଅଛନ୍ତି ।

ସାଧନା ।

ଉଲ୍ଲିଖିତ ଆଦର୍ଶକୁ ଅନୁକରଣ କରି ନିମ୍ନ ପ୍ରସଙ୍ଗକୁ ଭାଷାନ୍ତର କରି ଲେଖ ।

“ଚିତ୍ରପଟର ସ୍ଥଳାନ୍ତରରେ ଅଙ୍ଗୁଳୀ ନିର୍ଦ୍ଦେଶ କରି, ଲକ୍ଷ୍ମଣ କହିଲେ ଏହି ଅର୍ଯ୍ୟା, ଏହି ଆର୍ଯ୍ୟା ମାଣ୍ଡବୀ, ଏହି ବଧୂ ଶ୍ରୁତକୀର୍ତ୍ତି; କିନ୍ତୁ ଲଜ୍ଜାବଶରୁ ଉର୍ମ୍ମିଳାଙ୍କର ଉଲ୍ଲେଖ କଲେ ନାହିଁ । ସୀତା ବୁଝିପାରି କୌତୁକ କରିବା ନିମନ୍ତେ ହାସ୍ୟ ବଦନରେ ଉର୍ମ୍ମିଳା ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି, ଲକ୍ଷ୍ମଣଙ୍କୁ ପ୍ରଶ୍ନ କଲେ ..

ବତ୍ସ ! ଏ ଅଟେଡ଼ ଏ ଛବି ଚିହ୍ନିତ ରହିଅଛି ? ଲକ୍ଷ୍ମଣ କୌଣସି ପ୍ରତ୍ୟୁତ୍ତର ନ ଦେଇ ଈଷଦ୍ଧାସ କରି କହିଲେ ଦେବ ! ଦେଖନ୍ତୁ ହରଶରାସନ ଭଙ୍ଗବାର୍ତ୍ତା ଶ୍ରବଣରେ କ୍ରୋଧରେ ଅଧୀର ହୋଇ, କ୍ଷତ୍ରିୟ କୁଳାନ୍ତକାରୀ ଭଗବାନ୍ ଭୃଗୁନନ୍ଦନ ଅସ୍ମମାନଙ୍କର ଅଯୋଧ୍ୟାଗମନ ପଥ ରୋଧକରି, ଦଣ୍ଡାୟମାନ ଅଛନ୍ତି; ପୁନର୍ବାର, ଏଣେ ଦେଖନ୍ତୁ ଭୁବନବିଜୟୀ ଆର୍ଯ୍ୟ ଛାଦ୍ୱାଙ୍କର ଦର୍ପ ସଂହାର କରିବା ନିମନ୍ତେ ଶରାସନରେ ଶର ସନ୍ଧାନ କରି ଅଛନ୍ତି । ରାମ ଆତ୍ମପ୍ରଶଂସାବାଦ ଶ୍ରବଣରେ ଅତିଶୟ ବ୍ରୀଡ଼ିତ ହୁଅନ୍ତି, ଏଥି ପାଇଁ କହିଲେ, ଲକ୍ଷ୍ମଣ ! ଏହି ଚିତ୍ରରେ ଅନ୍ୟ ଅନ୍ୟ ବିବିଧ ଦର୍ଶନୀୟ ସତ୍ତ୍ୱେ ସେହି ଅଂଶ ନେଇ ପୁନଃ ଆନ୍ଦୋଳନ କରୁ ଅଛ କାହିଁକି ? ସୀତା ରାମଙ୍କ ବାକ୍ୟ ଶ୍ରବଣରେ ଆନନ୍ଦିତ ହୋଇ କହିଲେ, ନାଥ ! ଏମନ୍ତ ନହେଲେ, ସଂସାରର ଲୋକେ ଏକବାକ୍ୟ ହୋଇ ଆପଣଙ୍କର ଏତେ ପ୍ରଶଂସା କରନ୍ତେ କାହିଁକି ? ,,

ସମାପ୍ତ ।

